# ପାହାଡ ର ଆଲୋକ



— ଭଗୀରଥି ପାଣି

ଲେଖକ :-

**ଶ୍ରୀ ଭଗୀରଥି ପାଣ୍ଡ**

ନୂଆବନ୍ଧସାହି,

ନବରଙ୍ଗପୁର - ୭୬୪୦୫୯

ପ୍ରକାଶକ :-

**ମୟୂର ଚନ୍ଦ୍ରିକା ସାହିତ୍ୟ ସଂସଦ**

ରଜୁସାହି, ନବରଙ୍ଗପୁର ।

ମୁଦ୍ରଣ :-

**ଭଜେଶ୍ୱରୀ ପ୍ରେସ**

ପୂଜାରୀସାହି, ନବରଙ୍ଗପୁର ।

ପ୍ରକାଶକାଳ :-

**ଶୀତଳ ଷଷ୍ଠୀ - ୧୯୯୭**



**ଅମୂଲ୍ୟ ।**

# କିଞ୍ଚିତ କଥନ



୧୯୫୭ ମସିହାରେ ଓଡ଼ିଶାର ପ୍ରଖ୍ୟାତ କବି ଶ୍ରୀ ମନମୋହନ ମିଶ୍ର ସୋଭିଏତ ଦେଶ ଭ୍ରମଣରେ ଗଲାବେଳେ ତାଜିକ୍ ସ୍ଥାନରେ କିଛି ଦିନ ରହିଥିଲେ, ସେ "ନବଯୌବନର ଦେଶ" ନାମରେ ଭ୍ରମଣ କାହାଣୀଟିଏ ଲେଖି ତାହା ୧୯୯୪ରେ ପ୍ରକାଶ କରିଛନ୍ତି । ସେଥିରେ ଲେଖିଛନ୍ତି :—

"... ବାସ୍ତବତଃ ଓଡ଼ିଶାରେ ନିଜକୁ ଜଣେ କବି ବା ସାମ୍ବାଦିକ ବୋଲି କହିବା ଭଳି ହୀନକଥା କିଛି ନାହିଁ । ଏହାର କାରଣ ଏ’ଠାରେ କହି କିଛି ଲାଭନାହିଁ, କିନ୍ତୁ ସୋଭିଏଟ୍ ରୁଷିଆଙ୍କର ଆଗରେ କବି ବୋଲି ପରିଚୟ ଦେବାକୁ ଅନ୍ୟ କାରଣରୁ ଲଜ୍ଜାହୁଏ, ଠିକ୍ ଓଲଟା କାରଣରୁ । ଏ’ଠାରେ ତୁମକୁ ଏକ ଘୋର ପାପୀ, ହୀନଜୀବ ବୋଲି ଦେଖନ୍ତି । ସେଠାରେ ତୁମେ ଏତେ ଶ୍ରଦ୍ଧା ଏବଂ ସ୍ନେହର ପାତ୍ର ହେବର ଆଶଙ୍କା ଯେ ସେଥିରେ ତୁମେ ଲାଜ ପାଇଯିବ । ତୁମେ ଯଦି ତୁମର ଜୀବିକା କଥା ନକୁହ, ତେବେବି ତୁମର ‘ପ୍ରବେଶପତ୍ର’ରେ ସେମାନେ ତାହା ଦେଖି ନିଅନ୍ତି । "ପୋଏଟ୍" (କବି) ବା "ପିଶାଚ" (ରୁଷିଆ ଭାଷାରେ) ବୋଲି ଶୁଣିଲା ମାତ୍ରେ ୧୭/୧୮ ବର୍ଷର ତରୁଣୀ ବାଳିକା ଠାରୁ ୪୦/୫୦ ବର୍ଷ ବୃଦ୍ଧା ଜେଜେମା’ ପର୍ଯ୍ୟନ୍ତ ତୁମକୁ ଘେରିଯାଆନ୍ତି । ତୁମର କଳାବାଳକୁ ଚୁମାଦିଅନ୍ତି । ପୁରୁଷ ଲୋକେ ତୁମକୁ ଉଚ୍ଚକୁ ଉଠାଇ କାନ୍ଧ ଉପରେ ବସାଇ ବୁଲନ୍ତି ।

କବି, କଳାକାର ପ୍ରଭୃତିଙ୍କର ଏ’ଭଳି ଆଦର ଦେଖିଲେ ବେଳେ ବେଳେ ମନେହୁଏ ଜୀବନରେ ଏହି ବ୍ୟବସାୟ କରିଥିଲେ ଇହକାଳ ଓ ପରକାଳରେ ଯେଉଁ ସମ୍ମାନ ମିଳିଥାନ୍ତା, ତାହା ମୁଁ ଛାଡ଼ିଲି କାହିଁକି ? ସୋଭିଏଟ୍ ଦେଶରେ ଥିଲାବେଳେ ସଙ୍କଳ୍ପ କରିଥିଲି, ଭାରତକୁ ଫେରିବାପରେ ଲେଖିବା ମୋର ମୁଖ୍ୟ ଜୀବିକା କରିନେବି । " ଇତ୍ୟାଦି ।

ଏଇ ପରିପ୍ରେକ୍ଷୀରେ କବି ହେଉ କି ଜଣେ ଲେଖକ ହେଉ କେବଳ ନିଜର ଗୋଟିଏ ସ୍ୱତନ୍ତ୍ର ବହିପ୍ରକାଶ କରିବା ଦୁରୂହ ବ୍ୟାପାର । ଓଡ଼ିଶାରେ ଗୋଟିଏ ହେଲେ ନିରପେକ୍ଷ ଓ ସୁପ୍ରତିଷ୍ଠିତ ପ୍ରକାଶନ ସଂସ୍ଥା ନାହିଁ ଯିଏକି ଓଡ଼ିଶାର ସବୁ ଅଞ୍ଚଳର ବହି ପ୍ରକାଶ କରିବ । ବିତ୍ତବାନ କିମ୍ବା କ୍ଷମତାଶାଳୀ ନହେଲେ କେହି ନିଜେ ନିଜର ଗୋଟିଏ ପୁସ୍ତକ ପ୍ରକାଶ କରିବା ସମ୍ଭବ ନୁହେଁ । ଅତଏବ ମୋର ସହସ୍ରାଧିକ ଲେଖା ବନ୍ଧୁଙ୍କ ହେ

ପତ୍ରିକାରେ ବାହାରିଥିଲେ ମଧ୍ୟ ଗୋଟିଏ ପୁସ୍ତକ ପ୍ରକାଶ କରିବାର ପରି-କଳ୍ପନା କରି ପାରିନାହିଁ ।

ଏବେ ମୋ'ଭଳି ଜଣେ ସତ୍ତ୍ୱଧନ ଯୁବକ ଶ୍ରୀ ତୁଳସୀରାମ ମାଝି ଅନ୍ୟ ପୁରବାସୀଙ୍କ ସହାୟତାରେ ଏହି ପୁସ୍ତକ ପ୍ରକାଶ କରୁଥିବାରୁ ସହାୟକଙ୍କୁ କୃତଜ୍ଞତା ଜଣାଇବା ପାଇଁ ଭାଷା ନାହିଁ । ଗୋପାଳକୃଷ୍ଣ ପାଣିଗ୍ରାହୀ ମଧ୍ୟ ପୁସ୍ତକ ପ୍ରକାଶ ପାଇଁ ଉତ୍ସାହ ଦେଇଛନ୍ତି । ସେମାନଙ୍କ ପାଖରେ ମୁଁ କୃତଜ୍ଞ । ଏହି ଆଦିବାସୀ ଜନଜାଗରଣର ଆଲେଖ୍ୟ ପାଠ କରି ପାଠକମାନେ ଆଦିବାସୀଙ୍କ ଉନ୍ନତିର ପ୍ରଧାନ ପ୍ରତିବନ୍ଧକ ମଦ୍ୟପାନ, କୁକୁଡ଼ା ଯୁଦ୍ଧ ଜୁଆ, ମାଂସ, ମଦ୍ୟ ଭକ୍ଷଣ ଛଡ଼ାଇବାର ପ୍ରୟାସ କଲେ ଏ'ସବୁ ଲେଖା ସାର୍ଥକ ହେବ ।

— ଭଗୀରଥି ପାତ୍ର



## ପ୍ରକାଶକଙ୍କ ପକ୍ଷରୁ

ଏ' ପୁସ୍ତକ ପ୍ରକାଶରେ ମୂଳ ଉଦ୍ଦେଶ୍ୟ ହେଲା, ଶ୍ରୀ ଭଗୀରଥି ପାତ୍ରଙ୍କ ଅସଂଖ୍ୟ ଲେଖା ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକା, ସଙ୍କଳନ ଓ ସ୍ମରଣିକାରେ ପ୍ରକାଶ ପାଇଛି କିନ୍ତୁ ତାଙ୍କ ନିଜର ଗୋଟିଏ ହେଲେ ବହି ପ୍ରକାଶିତ ହୋଇ ନାହିଁ । ତେଣୁ ତାଙ୍କ ଭଳି ଜଣେ ଲେଖକଙ୍କର ବିଭିନ୍ନ ପତ୍ରପତ୍ରିକାରେ ବାହାରିଥିବା ଗୋଟିଏ ସଙ୍କଳନ ପୁସ୍ତକ ବାହାରିବା ଉଚିତ ମନେ କରି ଏ' ମନକଥା ପ୍ରକାଶ କରନ୍ତେ ସାହାଯ୍ୟର ହାତ ସବୁ ଲମ୍ବି ଆସିଲା । ଏ' ପରିପ୍ରେକ୍ଷୀରେ ସର୍ବଶ୍ରୀ ସି. କେ. ଗଣେଶ, ଅଶୋକ ମିଶ୍ର, ହରି-ସନ୍ତପାର ସୁବାସଚନ୍ଦ୍ର ଦାସ ପ୍ରମୁଖ ବହୁ ଉଦାର ବ୍ୟକ୍ତି ସହାୟତା କରିଥିବାରୁ ପୁସ୍ତକ ପ୍ରକାଶ ସମ୍ଭବ ହେଲା, ସେମାନଙ୍କ ନିକଟରେ ଆମେ କୃତଜ୍ଞ ।

ପାଠକ, ପାଠିକା ଏ'ପୁସ୍ତକ ଅଧ୍ୟୟନ କଲାପରେ ସେମାନଙ୍କ ମତାମତ ଜଣାଇଲେ ଆମେ ଉତ୍ସାହିତ ହେବୁ ।

ତୁଳସୀରାମ ମାଝୀ
( ପ୍ରକାଶକ ପକ୍ଷରୁ )



"ପାହାଡ଼ ର ଆଲୋକ" ନାମରେ ଅବିଭକ୍ତ କୋରାପୁଟ ଜିଲ୍ଲାର ଆଦିବାସୀ ଜନଜୀବନର କିଛି ଆଭାସ ମୂଳକ ଲେଖାମାନଙ୍କୁ ନେଇ ଏକ ସଙ୍କଳନ ପୁସ୍ତକ ପ୍ରକାଶ ପାଉଥିବା ଜାଣି ମୁଁ ବହୁତ ଖୁସି ହେଲି । ଏହା ଦ୍ୱାରା ବାହ୍ୟର ଗବେଷକ, ଲେଖକ, ସରକାରୀକଳ ପ୍ରମୁଖ ଏ'ଅଞ୍ଚଳ ସମ୍ପର୍କରେ କିଛି ଧାରଣା ପାଇ ଆଦିବାସୀଙ୍କ ଉନ୍ନତି ପଥରେ ସହାୟକ ହୋଇ ପାରିବେ ।

ଶ୍ରୀ ଭଗୀରଥି ପାଣଙ୍କ ଅନେକ ଏ'ପ୍ରକାର ଲେଖା ବିଭିନ୍ନ ପତ୍ରପତ୍ରିକାରୁ ମୁଁ ପଢ଼ିଛି ଏବଂ ପ୍ରୀତ ହୋଇଛି । ଓଡ଼ିଶା ରାଜଧାନୀ ଓ ଅନ୍ୟସ୍ଥାନରେ ଏ'ସବୁ ଲେଖାର ଚର୍ଚ୍ଚା ହୋଇ ଅବିଭକ୍ତ କୋରାପୁଟର ବିଭିନ୍ନ ବିଷୟରେ ଲୋକ ଅବଗତ ହେଉଥିବା ପାଠକ ମୁଖରୁ ଶୁଣିଲେ ଆନନ୍ଦ ଲାଗେ ।

ଏ' ପୁସ୍ତକର ଲେଖକ ଓ ପ୍ରକାଶକ ଉଭୟଙ୍କୁ ମୁଁ ଶୁଭେଚ୍ଛା ତଥା ଅଭିନନ୍ଦନ ଜ୍ଞାପନ କରୁଛି ।

**ସଦନ ନାୟକ**

ବିଧାୟକ, କୋଡିଙ୍ଗା ନିର୍ବାଚନ ମଣ୍ଡଳ

ନବରଙ୍ଗପୁର



ଆମର ଅନ୍ୟତମ ପୃଷ୍ଠ ପୋଷକ :—

ଶ୍ରୀ ସି. କେ. ଗଣେଶ
କଣ୍ଟ୍ରାକ୍ଟର

ଶ୍ରୀ ଅଶୋକ କୁମାର ମିଶ୍ର
ଅଧିବକ୍ତା

ଝରଣାର କୁଳୁନାଦ, ସୁନ୍ଦର ବନ ଲତା ପାହାଡ଼ ଘେରା ଓଡ଼ିଶାର ଦକ୍ଷିଣ ପ୍ରାନ୍ତରେ ଅବିଭକ୍ତ କୋରାପୁଟ ଜିଲ୍ଲାର ଅବସ୍ଥିତି । ଏହା ଏକ ଆଦିବାସୀ ଅଧ୍ୟୁଷିତ ଜିଲ୍ଲା ଭାବେ ସର୍ବବିଦିତ । ସମ୍ପ୍ରତି ଏହି ଜିଲ୍ଲା କୋରାପୁଟ, ରାୟଗଡ଼ା, ମାଲକାନଗିରି ଓ ନବରଙ୍ଗପୁର ୪ ଗୋଟି ଜିଲ୍ଲାରେ ବିଭକ୍ତ । ପୂର୍ବ ସୀମାରେ କଳାହାଣ୍ଡି ଜିଲ୍ଲା, ପଶ୍ଚିମରେ ମଧ୍ୟପ୍ରଦେଶର ବସ୍ତର ଜିଲ୍ଲା ଏବଂ ଦକ୍ଷିଣରେ ଆନ୍ଧ୍ରପ୍ରଦେଶର ବିଜୟନଗର ଓ ବିଶାଖାପାଟଣା ଜିଲ୍ଲା ବାହୁ ବେଷ୍ଟନ କରି ରହିଛି ।

ଅବିଭକ୍ତ କୋରାପୁଟ ଜିଲ୍ଲାରେ ଅଠେଇଶି ଗୋଟି ଆଦିବାସୀ ଗୋଷ୍ଠୀ ମୁଖ୍ୟତଃ ଉପଜାତି ଭାବେ ରହିଛନ୍ତି । ସେମାନଙ୍କ ମଧ୍ୟରେ କନ୍ଧ, କୋୟା, ପରଜା ଗଣ୍ଡ, ସଉରା, ବଣ୍ଡା ପ୍ରଭୃତି ଅନେକାନେକ ଜାତିର ଭାଷା ଓ ସ୍ୱତନ୍ତ୍ର ସଂସ୍କୃତି ରହିଛି । ସେମାନଙ୍କର ସାମାଜିକ ଚଳଣୀ, ଗୀତନାଟ ଆଞ୍ଚଳିକ ଭିତ୍ତି ତଥା ଗୋଷ୍ଠୀଗତ ସ୍ତରରେ ଭିନ୍ନତା ପରିଦୃଶ୍ୟମାନ ହୁଏ । ଉତ୍କଳୀୟ ଭାଷା ଓ ସଂସ୍କୃତି ସେମାନଙ୍କ ନିକଟରେ ଅଦେଖା ନ ହେଲେ ମଧ୍ୟ ପାର୍ଥକ୍ୟ ବହୁତ ଏବଂ ବୈଦିକ ସଂସ୍କୃତି, ଆଧୁନିକ ସଭ୍ୟତାକୁ ଏବେ ଏବେ ସେମାନେ ସ୍ପର୍ଶ କରିବାର ସୁବିଧା, ସୁଯୋଗ ପାଇବାର କିଞ୍ଚିତ ପରିଦର୍ଶନ ହେଉଛି । ଏହାସତ୍ତ୍ୱେ ସେମାନଙ୍କର ସାମାଜିକ ସ୍ଥିତି ଯେ ଦୃଢ଼, ଭାରତୀୟ ସଂସ୍କୃତିର ନିକଟତମ ଏଥିରେ ସନ୍ଦେହ ନାହିଁ । ଏହାବ୍ୟତୀତ ଏକ ଉଲ୍ଲେଖଯୋଗ୍ୟ ବିଷୟ ଏହି ଯେ, ଶବର ବା ସଉରା ଗୋଷ୍ଠୀଙ୍କ ନିଜ ଭାଷାରେ ଲିପି ରହିଛି ଏବଂ ରାୟଗଡ଼ ଜିଲ୍ଲା ଗୁଣପୁର ଅଞ୍ଚଳରେ ସଉରା ଭାଷା ଓ ଲିପିର ପୁସ୍ତକ ମାନ ଅଛି । କିଛି ବର୍ଷ ହେଲା ମୁଦ୍ରଣ ଯୋଗ୍ୟ ଲିପି ସଂସ୍କାର କରିଯାଇ ଛାପାଖାନା ପ୍ରତିଷ୍ଠିତ ହୋଇ ପାରିଛି ।

ଏଇସବୁ ଗୋଷ୍ଠୀ କୃଷି, ଜଙ୍ଗଲଜାତ ଦ୍ରବ୍ୟର କାରବାର ଏବଂ କାଇଁଚ କାଷ୍ଠ ଓ ବାଉଁଶର ହସ୍ତଶିଳ୍ପ ଇତ୍ୟାଦି ଦ୍ୱାରା ଜୀବିକା ନିର୍ବାହ କରୁଥିଲେ ସୁଦ୍ଧା

ଅଭାବ ଅନଟନ କାରଣରୁ ଜୀବନ ଜୀଇଁବା ସକାଶେ ଶ୍ରମ ହିଁ ସେମାନଙ୍କର ମୂଳ ଜୀବିକା ଭାବେ ପରିଦୃଷ୍ଟ ହୁଏ । ଏହି ଅଗହନ ବନର ବନବାସୀ ଆଉ ପାହାଡ଼ ତାଳୁ ଅଞ୍ଚଳର ପାଷାଣପିଣ୍ଡ ମନୁଷ୍ୟମାନେ କେବଳ ଖାଇ ବଞ୍ଚିବା ନଶିଖି ମାନୋ-ବଚର କର୍ମମାନ ମଧ୍ୟ କରିଥାନ୍ତି । ସେମାନଙ୍କ ମଧ୍ୟରେ ଅନେକାନେକ ଗୁଣିଗାରେଡ଼ି ତାନ୍ତ୍ରିକ, ସର୍ପ ବିଦ୍ୟାବିତ୍, ଦେବୀ ପୂଜକ, ବଡ଼େଇ, ଲହରା, କବି ତଥା ଚେର-ମୂଳ ବନସ୍ପତି ବୈଦ୍ୟ ଭଳି ବହୁ ପ୍ରତିଭାବାନ ବ୍ୟକ୍ତି ବିଦ୍ୟମାନ । ନୃତ୍ୟ, ସଙ୍ଗୀତ କ୍ଷେତ୍ରରେ ସେମାନେ ବିନା ଉପାର୍ଜନ, ବିନା ଖାଦ୍ୟପେୟରେ ଲଗାତାର ବହୁ ଦିବସ ଧାରାବାହିକ ଭାବେ ବିନିଦ୍ର ରଜନୀ ଗାଇ, ନାଚି ବଜାଇ ଦେବାକୁ ସୁଖ ମଣନ୍ତି ।

ଉପର୍ଯ୍ୟୁକ୍ତ ଗୋଷ୍ଠୀଙ୍କ ଠାରୁ ଆଉ କେତେକ ଭିନ୍ନ ଉପଜାତି ବା ଅନୁସୂଚିତ ଜାତି ମଧ୍ୟ ଏ' ଅଞ୍ଚଳରେ ପରିଦୃଷ୍ଟ ହୁଅନ୍ତି । ସେମାନଙ୍କ ସହିତ ଓଡ଼ିଆ ଜାତି ବା ତଥାକଥିତ ସଭ୍ୟ ଜାତିର ବହୁ ସାମଞ୍ଜସ୍ୟ ରହିଛି । ଏ'ମାନେ ବାସ୍ତବ ଶବ୍ଦାର୍ଥରେ ଉତ୍କଳୀୟ 'ଉପଜାତି' କହିଲେ ଅତ୍ୟୁକ୍ତି ହେବ ନାହିଁ । ଏ'ମାନଙ୍କ ମଧ୍ୟରେ ପାଇକ, ଭତ୍ରା, ଅମନାତ୍ୟ, ଭୂମିଆଁ ଓ ଲହରା ଏହି ପାଞ୍ଚଗୋଟି ଜାତି ପ୍ରଧାନ ।(ଏହି ପାଞ୍ଚୋଟି ଜାତିର ଭାଷା ପ୍ରାୟଃ ଏକ ପ୍ରକାରର ହୋଇଥାଏ । ସେମାନେ ଭତ୍ରା ଭାଷାକୁ ଅନୁକରଣ କରନ୍ତି) । ଏ'ମାନଙ୍କ ମିଳିତ ଭାଷାକୁ "ପଞ୍ଚ-କୁଳ" ଭାଷା କୁହାଯାଏ ଏବଂ ଏହି କଥିତ ଭାଷାକୁ ଆଦିବାସୀ, ହରିଜନ, ଶିକ୍ଷିତ ଓ ଅଶିକ୍ଷିତ ଓଡ଼ିଆ/ପ୍ରାକୃତ ନିର୍ବିଶେଷରେ ସମସ୍ତ ଜନସାଧାରଣ କହି, ବୁଝି ପାରନ୍ତି । ମଧ୍ୟପ୍ରଦେଶ ଓ ପଶ୍ଚିମ ଓଡ଼ିଶାର କେତେକ ସମିଶ୍ରିତ ଭାଷାକୁ ଯେପରି "ଛତିଶଗଡ଼ି" ଭାଷା କୁହାଯାଏ ଏବଂ ସେହି ଅଞ୍ଚଳରେ ସମସ୍ତେ ପ୍ରାୟତଃ ବୋଲ କେଳେ ପ୍ରୟୋଗ ତଥା ବ୍ୟବହାର କରିଥାନ୍ତି, ଠିକ୍ ସେପରି ଅବିଭକ୍ତ କୋରାପୁଟର ଦେଶଜ ଭାଷା କିମ୍ବା ଆଞ୍ଚଳିକ ଭାଷା କହିଲେ ଏହି "ପଞ୍ଚକୁଳ" ଭାଷାକୁ ବ୍ୟବହାର ବା ପ୍ରୟୋଗ କରିବା ସମୀଚୀନ ହେବ । ଏ'ମାନେ ବହୁ ସାଧୁଶବ୍ଦ ବ୍ୟବହାର କରନ୍ତି । ଏହାକୁ କୁହାଯାଏ "ଦେଶିଆ ଭାଷା" ଏବଂ ଗଡ଼ ବା ସହରରେ ପ୍ରଚଳିତ ଶୁଦ୍ଧଭାଷାକୁ ସେମାନେ "ଗଡ଼ଆଭାଷା" ତଥା ସହରୀ ଲୋକଙ୍କୁ "ଗଡ଼ଆ" ଲୋକ କହନ୍ତି ।

ଏ'ମାନଙ୍କ କଥିତ ଭାଷାରେ କେତେକ ମୌଳିକ ଶବ୍ଦ ବ୍ୟବହାର ହୁଏ । କରେସିମ, ଦଆଯିଲ ବା ମେରସ୍ ପ୍ରଭୃତି ଶବ୍ଦମାନ ବୈଦେଶିକ ଶବ୍ଦ ଅଟେ

ଓଡ଼ିଆରେ ଏହାର କୌଣସି ମୌଳିକ ଶବ୍ଦ ବ୍ୟବହୃତ ହେବାର ଦୃଷ୍ଟାନ୍ତ ନାହିଁ କିନ୍ତୁ ଆଦିବାସୀମାନଙ୍କର ସେହିଭଳି ଅନେକ ଜିନିଷର ମୌଳିକ ଶବ୍ଦ ରହିଛି । ଯଥା :— ମାଟିରୁ ବାହାରୁ ଥିବା ତେଲ = ମାଟିତେଲ୍ ବା "ମାଟିତେଲ" (କେରାସିନ, ଡିଜେଲ, ପେଟ୍ରୋଲ) । ଯେଉଁ ପେଡ଼ି ବା ପେଟିକାରେ ଅଗ୍ନି ବା ନିଆଁ ସୁରକ୍ଷିତ ରହିଥାଏ ତାହା "ନିଆଁପେଡ଼ି" ବା ଜଳପେଡ଼ି (ଦିଆସିଲି, ମେଚ୍) ଇତ୍ୟାଦି ।

ସେହିଭଳି ଆମେ ଗୋଟିଏ ସ୍ଥାନରୁ ବାହାରି ଦୂର ଦୂରାନ୍ତ ବୁଲି ବୁଲି ଆସିଲେ କିମ୍ବା ଗୋଟିଏ ସ୍ଥାନରେ ଠିଆ ହୋଇ ଘୂରି ଘୂରି ପଡ଼ିଗଲେ ଆମେ କହିଥାଉ "ଘୂରିବୁଲୁ ଛୁ" ଏବଂ "ଘୂରି ଘୂରି ପଡ଼ିଗଲି" କିମ୍ବା "ବୁଲି ବୁଲି ପଡ଼ିଗଲି ।" ଏ ପ୍ରକାର ଦୁଇଗୋଟି ଅବସ୍ଥାରେ ଆମର ଦୁଇଟି ଶବ୍ଦ ବ୍ୟବହାର ହୁଏ ନାହିଁ, ଦୁଇ ଅବସ୍ଥାରେ ସେଇ ଏକା ଶବ୍ଦ 'ଘୂରିଲି' କିମ୍ବା 'ବୁଲିଲି' ବ୍ୟବହାର କରିଥାଉ କିନ୍ତୁ ଆଦିବାସୀମାନେ ବହୁ ଦୂରକୁ ଭ୍ରମଣରେ ଗଲେ 'ବୁଲୁଚି' (ବୁଲିଗଲି) ଶବ୍ଦ ବ୍ୟବହାର କଲାବେଳେ ମଣ୍ଡଳାକାରରେ ଘୂରିଲେ କିମ୍ବା ଗୋଟିଏ ସ୍ଥାନରେ କେନ୍ଦ୍ରବିନ୍ଦୁରେ ଥାଇ ଘୂରି ଘୂରି ପଡ଼ିଗଲେ ବା ବୁଲିଲେ ସେମାନେ କହନ୍ତି "କିନ୍ଦ୍ରାଲି", ଯଥା:— ଚକ୍ର ବୁଲିଲି = ଚକ ବା ଗୁଳ କିନ୍ଦ୍ରାଲି । ଏହି ପ୍ରକାର ଶବ୍ଦ ପ୍ରୟୋଗ ଆଦିବାସୀ ଅଧ୍ୟୁଷିତ କୋରାପୁଟ ସମେତ ପଶ୍ଚିମ ଓଡ଼ିଶାରେ ମଧ୍ୟ ବ୍ୟବହୃତ ହୋଇଥାଏ । ଏ'ସବୁ ଶବ୍ଦ ବିଜ୍ଞାନ ସିଦ୍ଧ ମନେହୁଏ ।

ଏହା ବ୍ୟତୀତ ଏହି କୋରାପୁଟ ଅଞ୍ଚଳର ଆଦିବାସୀମାନେ କେତେକ ପ୍ରତୀକାତ୍ମକ ବା ସୂଚନାତ୍ମକ ଶବ୍ଦମାନ ବ୍ୟବହାର କରନ୍ତି । ବୃଦ୍ଧଜନଙ୍କୁ ଆମେ ବୁଢ଼ା/ବୁଢ଼ୀ କହିଥାଉ କିନ୍ତୁ ସେମାନେ କହନ୍ତି:—"ଡ଼ାକରା/ଡ଼ାକରି" । ଏହାର ଭାବାତ୍ମକ ପ୍ରତୀକ ହେଲା ଯେଉଁମାନଙ୍କର ମରିବାର ବେଳ ହେଲାଣି ସେମାନଙ୍କ ନିକଟକୁ ମୃତ୍ୟୁର ଦେବସ୍ଥାନ ବା ଯମପୁରରୁ ଡ଼ାକରା 'ଡ଼ାକରା' ଆସିଲାଣି, ମରିବା ଡାକରା ଆସିବାର ସୂଚନା ମିଳିଯିବାରୁ ବୃଦ୍ଧ ବ୍ୟକ୍ତିଙ୍କୁ କୁହାଯାଏ 'ଡ଼ାକରା' । ଆଦିବାସୀ ସମ୍ପ୍ରଦାୟର ଭାଷା ମଧ୍ୟରେ ବହୁ ସଂସ୍କୃତ ଶବ୍ଦ ମଧ୍ୟ ପ୍ରଚଳିତ ହୋଇଛି-ଥାଏ । ଯଥା:—ଅନ୍ନ, ଦାରୁ ଇତ୍ୟାଦି । ସଭ୍ୟ ଶିକ୍ଷିତମାନେ ଉତ୍କଳର ପରମ ଆରାଧ୍ୟ ଦେବତା ଶ୍ରୀ ଜଗନ୍ନାଥଙ୍କୁ ଦାରୁ ଦେବତା କହନ୍ତି, କାରଣ ସେ କାଠରେ ତିଆରି ବିଗ୍ରହ କିନ୍ତୁ ଦୈନନ୍ଦିନ ପ୍ରୟୋଗରେ ଆମେ କାଷ୍ଠକୁ କାଠ କହୁ କିନ୍ତୁ

ଆଦିବାସୀମାନେ କାଷ୍ଠକୁ "ଡାରୁ" କହିଥାନ୍ତି । ସେଇଭଳି "ଘଡ଼"କୁ ଆଦିବାସୀମାନେ "ଅନ୍ନ" କହନ୍ତି । ଏ'ସବୁ ମୂଳତଃ ସଂସ୍କୃତ ଶବ୍ଦ ଅଟେ । ଏହିପରି ଅନେକ ମାର୍ଜିତ ଓ ସାଧୁ ଶବ୍ଦ ସେମାନେ ବ୍ୟବହାର କରନ୍ତି ।

ଏହାସତ୍ତ୍ୱେ, ସ୍ୱତନ୍ତ୍ର ସଂସ୍କୃତି ଓ ବୈଶିଷ୍ଟ୍ୟ ଥିବା ସତ୍ତ୍ୱେ ସେମାନେ କେବେ ସ୍ୱତନ୍ତ୍ରତାଦାବୀ କରି ନାହାନ୍ତି । ଆମ ଦେଶରେ ବିଚ୍ଛିନ୍ନ ମନୋଭାବ ମୁଣ୍ଡ ଟେକୁଛି, ଅନେକ ସ୍ୱତନ୍ତ୍ରତା ଓ ଆଞ୍ଚଳିକ ମନୋଭାବ ପୋଷଣ କରୁଛନ୍ତି କିନ୍ତୁ ବିପୁଳ ଜନସଂଖ୍ୟକ ଏହି କନ୍ଧ ଆଦିବାସୀ ଜନ ଜାତି ନିଜ ଆପଣା ଭାଷାକୁ ଓଡ଼ିଆଙ୍କ ଉପଜାତି ଓ ଉପଭାଷା ଭାବେ ମାନି ନେଇଛନ୍ତି, ଆଜି ଯିଏ କିମ୍ବା ଅମାନ୍ୟ କରି ନାହାନ୍ତି । ଏହି ପରିପ୍ରେକ୍ଷୀରେ ସେମାନଙ୍କ ନିକଟରେ ଓଡ଼ିଆ ଜାତି ପରିଚୟ ଓ ଶିକ୍ଷା ଦେଇ ସେମାନଙ୍କୁ ଯଥାର୍ଥ ଶିକ୍ଷିତ, ସୁସଂସ୍କୃତ ଓ ସଭ୍ୟକରି ଗଢ଼ିତୋଳି । ଏବଂ ସମ୍ପ୍ରସାରିତ ଆର୍ଥିକ ବିକାଶର ପଥ ପ୍ରଦର୍ଶନ କରି, ସୁବ୍ୟବସ୍ଥିତ କରି ଜାତୀୟ ସ୍ରୋତରେ ସାମିଲ କରିବା ଆମମାନଙ୍କର କର୍ତ୍ତବ୍ୟ ନୁହେଁ କି ?

ତା' ବ୍ୟତୀତ ଓଡ଼ିଆ ଭାଷାବିତ୍ ତଥା ସାହିତ୍ୟିକମାନେ ସେମାନଙ୍କ କଥିତ ଭାଷାର ମୂଲ୍ୟବାନ ଶବ୍ଦ ସମ୍ପଦ, ଉଚିତ ମୂଲ୍ୟବାନ ବୈଜ୍ଞାନିକ ଶବ୍ଦ ଓ ଧ୍ୱନିମାନଙ୍କୁ ଏବଂ ସାଂସ୍କୃତିକ ଜୀବନ, ବିଶିଷ୍ଟ ବ୍ୟକ୍ତିତ୍ୱ ଓ ଘଟଣାମାନ ଓଡ଼ିଆ ରଚନା ମାନଙ୍କରେ ପ୍ରୟୋଗ କଲେ ସେମାନେ ସୁଖୀ ହେବେ, ପ୍ରେରଣା ପାଇ ଏକାତ୍ମତା ବୋଧ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟ ସମୃଦ୍ଧ ହେବାର ଅବକାଶ ରହିଛି ।

•••※•••

ସୌଜନ୍ୟ :—

"ପ୍ରଜାତନ୍ତ୍ର" ସାପ୍ତାହିକ ତା ୨୭-୨-୯୫/ମାର୍ଚ୍ଚ ୪ ତଥା

ସମ୍ପାଦକଙ୍କୁ ପତ୍ର ବିଭାଗରେ ପ୍ରକାଶିତ । ସାପ୍ତାହିକ-"ସମାଜ" ୨୩-୮-୯୫

ମାଲକାନଗିରି ଜିଲ୍ଲାରେ ବସବାସ କରୁଥିବା ବଣ୍ଡା ନାମକ ଜନଜାତି ପାହାଡ଼ ଆଦିମ ସଭ୍ୟତାରେ ରହିଥିବା ଲକ୍ଷ୍ୟ କରି ସରକାରଙ୍କ ପକ୍ଷରୁ ଚଳିତ ଶତାବ୍ଦୀର ସପ୍ତମ ଦଶକ ବେଳକୁ ବଣ୍ଡା ଉନ୍ନୟନ ପ୍ରକଳ୍ପର ଶୁଭାରମ୍ଭ ହୋଇ-ଥିଲା । ଏହାର ଲକ୍ଷ୍ୟଥିଲା ବଣ୍ଡା ଗିରିଜନଙ୍କୁ ସଭ୍ୟତାର ସ୍ପର୍ଶ ଦେଇ ଜଙ୍ଗଲୀୟ ଜନଜାତି ତଥା ମହାଭାରତୀୟ ମହାସ୍ରୋତରେ ସାମିଲ କରିବା ।

ଏଥି ନିମନ୍ତେ ୧୯୭୯ ମସିହାରେ ପ୍ରାଥମିକ ସେବାଶ୍ରମ ବିଦ୍ୟାଳୟ ଏବଂ ୧୯୮୮ ରେ ହାଇସ୍କୁଲ ପ୍ରତିଷ୍ଠା କରାଗଲା । ତା' ବ୍ୟତୀତ ତରୁଣ ଯୁବା ଓ ବୟସ୍କଙ୍କ ପାଇଁ "ଆଶା" ନାମକ ଏକ ତାଲିମ ଅନୁଷ୍ଠାନ ଗଠନ କରାଯାଇ ବାଉଁଶର କୁଟୀର ଶିଳ୍ପ, ଗାମୁଛା, ଚଦର ଇତ୍ୟାଦି ବୟନ ଶିଳ୍ପ, ପୁଷ୍ପବୃକ୍ଷ, ପତ୍ରରେ ଖଲି ଦନା (ଟାଟିଆ) ଥାଳି ଇତ୍ୟାଦି ତିଆରି କରିବା ପ୍ରଶିକ୍ଷଣ ଦିଆଗଲା ।

ଦୁଃଖର କଥା ଯେ ପରବର୍ତ୍ତୀ କାଳରେ ଖଲିପତ୍ର ହସ୍ତଶିଳ୍ପ ଓ ଫୁଲବୃକ୍ଷ ଯୋଜନାକୁ ବନ୍ଦ କରିଦିଆଗଲା । ସୁଖର କଥା ଯେ ଏବେ ମଧ୍ୟ ଅଳ୍ପ ଅଶିକ୍ଷିତ ହେଲେ ସୁଦ୍ଧା ବଣ୍ଡାମାନେ ଯେଉଁ ବାଉଁଶର ଗୃହ ଉପକରଣ ଫୁଲଦାନୀ ଆଦି ଏବଂ ଗାମୁଛା ଚଦର ବୟନ କରୁଛନ୍ତି ତାହାର ସୌନ୍ଦର୍ଯ୍ୟ ତଥା କାରିଗରୀ କୌଶଳର ତୁଳନା ନାହିଁ ।

ମାଲକାନଗିରି ଜିଲ୍ଲାର ଖଇରପୁଟ ଗ୍ରାମଠାରୁ ମୁଦୁଲିପଡ଼ା ରାସ୍ତାର ପ୍ରାୟ ୫୦ କି:ମି:ର ପରିଧି ସମତଳ ଅଞ୍ଚଳରେ ଯେଉଁ "ତଳେବଣ୍ଡା" ନାମରେ ନାମିତ ହୋଇ ରହିଛନ୍ତି ସେମାନେ ସରକାରୀ ସହାୟତାର କିଛି ଉପଯୋଗ କରି ସାଧାରଣ ଆଦିବାସୀଙ୍କ ସହ ସାମିଲ ହୋଇ ପାରୁଛନ୍ତି । ସେମାନେ ଲୁଗା ପିନ୍ଧିବା ଶିଖିଛନ୍ତି, ହାଟବଜାର ସହରକୁ ଯାଇ ସଭ୍ୟ ଜଗତର ଆଲୋକ ସନ୍ଦର୍ଶନ କରି-ଛନ୍ତି; କିନ୍ତୁ ୪୦୦୦ ଫୁଟ ଉଚ୍ଚ ପାହାଡ଼ ଘାଟି ଉପରେ ଥିବା ବଣ୍ଡାମାନଙ୍କ ସେପରି ପରିବର୍ତ୍ତନ ଘଟିନାହିଁ । କଦମଗୁଡ଼ା, ବୃସବେଡ଼ା, ଗୋବିନ୍ଦପଲ୍ଲୀ, ଖଇରପୁଟ ଗ୍ରାମାଞ୍ଚଳରେ ଥିବା ବଣ୍ଡାମାନଙ୍କ ସହ ପାହାଡ଼ ଉପରେ ଥିବା "ଉପରବଣ୍ଡା" ମାନେ ସମକକ୍ଷ ହୋଇପାରି ନାହାନ୍ତି ।

ଏହି ବଣ୍ଡାଘାଟି ବିଭିନ୍ନ ପାହାଡ଼ର ସମଷ୍ଟି । ହାଣ୍ଡି ପାହାଡ଼, ଜଲ ପାହାଡ଼, ଗୋଇ ପାହାଡ଼, ତୁଳସୀ ପାହାଡ଼ ପ୍ରଭୃତି ଏ' ଅଞ୍ଚଳରେ ରହିଛି । ୮୦ ବ:ମି: ପରିଧିରେ ଅନ୍ଦାଜ ୩୦ ଗୋଟି ବଣ୍ଡା ଗ୍ରାମ । ଅନ୍ତ୍ରବନ୍ଧାଲି ଗ୍ରାମ ଅନ୍ତଃସୀମା ବରେ ମୁଦୁଲିପଡ଼ା ରାସ୍ତା ଉପରେ ପ୍ରଥମ ଗ୍ରାମ ଅଭ୍ୟନ୍ତରରେ ରହିଛି ଦୁମୁରିପଡ଼ା ବୋଡ଼େଲ ସେହିପରି ବନ୍ଧଗୁଡ଼ା ବନ୍ଦୀପଡ଼ା ପ୍ରଭୃତି ।

ଏ' ଇଲାକାର ପାହାଡ଼ି ଜାତି "ଉପରବଣ୍ଡା" ମାନେ ଏ'ଯାବତ ଲୁଗା ପିନ୍ଧି ଜାଣନ୍ତି ନାହିଁ । ପୁରୁଷମାନେ ମାତ୍ର ଗୋଟିଏ କୌପିନ (ଲେଙ୍ଗୁଟି) ପରିହିତ ହୋଇଥାନ୍ତି । ହାତରେ ଥାଏ ଧନୁ, କାନ୍ଧରେ ଶର ତୂଣୀର । ମହିଳାମାନେ କଟିଦେଶରେ ମାତ୍ର ଦେଢ଼ଫୁଟ ଚଉଡ଼ାର ଡୋରିଆ କନାଖଣ୍ଡେ ଗୁଡ଼େଇ ହୋଇ-ଥାନ୍ତି, ଗୁପ୍ତ ଅଂଶରେ ବସ୍ତ୍ର ଆବୃତ କରନ୍ତି ନାହିଁ, ବିଭିନ୍ନ ପ୍ରକାର ବନଜାତ କୋଳ ଓ କାଇଁଚର ମାଳରେ ବକ୍ଷଦେଶ ଆବୃତ କରିଥାନ୍ତି ।

ସ୍ତ୍ରୀ ଲୋକମାନଙ୍କ ହାତ ସାରା ବଳାରେ ଭରି ଯାଇଥାଏ, ବେକରେ ବଳା; ଏଇ ତାଙ୍କର ପ୍ରିୟ ଅଳଙ୍କାର । ପୁରୁଷମାନେ କଥା କଥାକେ ସାମାନ୍ୟ ରୁଷ୍ଟ ହେଲେ ଶର ଚଳାଇ ଅପରର ପ୍ରାଣ ନେବାକୁ କୁଣ୍ଠାବୋଧ କରନ୍ତି ନାହିଁ । ମରନ୍ତି ନାହିଁ କିନ୍ତୁ ସେମାନେ, କାରଣ ଚଳନ୍ତପଥ ଶିର ତା' ମଧ୍ୟରେ କୌଣସି ବୃକ୍ଷର ଚେରକୁ ପୁରାଇ ଉପରେ ସିଲେଇ କରି ଦେଇଥାନ୍ତି ତାହାକୁ କୁହାଯାଏ "ଅକାଟ" । ଯିଏ ସେହି ମନ୍ତ୍ରପୂତ ମୂଳ ଧାରଣ କରିଥାଏ ତା' ଚମଡ଼ାରେ ଶର ଛୁରି ଇତ୍ୟାଦି ତୀକ୍ଷଣ ଅସ୍ତ୍ର କ୍ଷତ କରିପାରେ ନାହିଁ ।

ସେମାନେ ଏ' ପର୍ଯ୍ୟନ୍ତ ଭାତ ରୋଟି କିମ୍ବା କୌଣସି ପ୍ରକାର ମିଠା ଜିନିଷ ପାଟିରେ ସ୍ପର୍ଶ କରିନାହାନ୍ତି । ଖାଆନ୍ତି ଜଅ, ବନଜାତ କେତେକ ଶସ୍ୟ ଓ ମାଣ୍ଡିଆ ଜାଉ ଏବଂ ପରିବା ସିଝା । ଲୁଣ ଗ୍ରହଣ୍ନ୍ତି ଅତି କମ୍ କିନ୍ତୁ ପ୍ରଚୁର ଲଙ୍କା ଖାଆନ୍ତି ଏପରିକି ପେଜ ସହିତ ପାଏ କଲେ ଲଙ୍କା ମରିଚ କାମୁଡ଼ି ଖାଇ ପାରନ୍ତି । ମାଂସ ଖାଆନ୍ତି ଅନେକେ କିନ୍ତୁ ଅନେକ ଲୋକ ନିରାମିଷାସୀ ମଧ୍ୟ ଅଛନ୍ତି ।

ସେମାନେ ଦର୍ପଣ ପାନିଆଁ ଘଣ୍ଟି, ବରାହ ଦନ୍ତର ବେଷ୍ଟଯୁକ୍ତ ଛୁରୀ, ଶିଙ୍ଗ ଧନୁଶର, ଶିଙ୍ଗା, ଟାଙ୍ଗିଆ, ମୟୂର ପୁଚ୍ଛ ଓ ଗାରଯୁକ୍ତ ବସ୍ତ୍ରକୁ ବେଶ୍ ଭଲପାଆନ୍ତି

ଓ ବ୍ୟବହାର କରନ୍ତି । ଲୁଣ, ସୁନ୍ଦାନାମକ ଧୂଆଁପତ୍ରର ପିକା ଓ ମଳମ ଛଡ଼ା ଲୁଗି ଶୁଖୁଆ ବ୍ୟତୀତ ଅନ୍ୟ କୌଣସି ପଦାର୍ଥ ବାହାରୁ କ୍ରୟ କରନ୍ତି ନାହିଁ । ସବୁ ବନଜାତ ଦ୍ରବ୍ୟ ତଥା ପାହାଡ଼ ଉପରେ ମିଳୁଥିବା ଜିନିଷ ବ୍ୟବହାର ଓ ଉପଭୋଗ କରିଥାନ୍ତି ।

ଆଜି ସୁଦ୍ଧା ସେମାନେ ମଥାରେ ତେଲ ଲଗାଇବା ଜାଣିନାହାନ୍ତି ଏବଂ ସ୍ତ୍ରୀ ଲୋକମାନେ ଲଣ୍ଡା ହୋଇ ରହିଥାନ୍ତି । ସେମାନେ ଦାନ୍ତ ଘଷନ୍ତି ନାହିଁ, ମଳ-ତ୍ୟାଗ ପରେ ଜଳଦ୍ୱାରା ଶୌଚ ନହୋଇ ପତ୍ରରେ ପୋଛନ୍ତି, ନିତ୍ୟ ନୈମିତ୍ତିକ ଭାବେ ସ୍ନାନ କରନ୍ତି ନାହିଁ । ଏହା ସତ୍ତ୍ୱେ ସେମାନଙ୍କର ନିଜସ୍ୱ ସଂସ୍କୃତି ରହିଛି । ସେମାନଙ୍କ ନିଜ ଭାଷାରେ ଗୀତ, ସ୍ୱତନ୍ତ୍ର ନୃତ୍ୟ, ସାମାଜିକ ବିଧିବିଧାନ ପାଳନ କରନ୍ତି । ରଜା-ରାଣୀଙ୍କ "ପାଟଖଣ୍ଡା" ନାମକ ଖଣ୍ଡାକୁ ଇଷ୍ଟଦେବୀ ରୂପେ ପୂଜା କରନ୍ତି, କେତେକ ବୃକ୍ଷକୁ ପୂଜା କରନ୍ତି, ଚୈତ୍ରପର୍ବ ଓ ପାଟଖଣ୍ଡା ଯାତ୍ରା ଆଡ଼ ଉତ୍ସବ ମନାନ୍ତି ।

ରୋଗ ବ୍ୟାଧିର ଉପଶମ କରିବା ପାଇଁ ସେମାନଙ୍କ ମଧ୍ୟରେ ବୈଦ୍ୟ ଅଛନ୍ତି । ରୋଗୀ ବଇଦ ନିକଟରେ ପହଞ୍ଚିବା କ୍ଷଣି ତା'କୁ ସୂର୍ଯ୍ୟଙ୍କ ଆଡ଼କୁ ମୁଖ କରି ଦଣ୍ଡାୟମାନ ହେବାକୁ ହୁଏ, ବଇଦ ସୂର୍ଯ୍ୟଙ୍କୁ ଲକ୍ଷ୍ୟକରି ପାଣିଗ୍ଲାସ ଉପରକୁ ଜଳ ମଧ୍ୟଦେଇ ରୋଗୀ ଉପରେ ଯେଉଁ ସୂର୍ଯ୍ୟକିରଣ ପଡ଼େ ତଦ୍ୱାରା ରୋଗୀର ବର୍ତ୍ତିକୁ ଦେଇ ବଇଦ ରୋଗ ନିର୍ଣ୍ଣୟ କରେ ଏବଂ ଚେରମୂଳ ଔଷଧ ଦେଇ ବହୁ ଦୁରାରୋଗ୍ୟ ରୋଗମାନ ଭଲ କରିଦିଏ । ରୋଗୀ ଭଲହେଲେ "ଭଗବାନ" ଦେବତାଙ୍କୁ ପୂଜା କରେ ।

ଆଡବାଣି, କିରସାନି, ଶୁନ୍ଧୀ ମାନ୍ଦ୍ରା, ଏଇଭଳି ହୋଇଥାଏ ସେମାନଙ୍କ ନାମକରଣ । ଧାଙ୍ଗଡ଼ା ମାଝୀ କିରସାଣୀ ମାନ୍ଦ୍ରା ପାଙ୍ଗୀ ପ୍ରଭୃତି ଉପଜାତି ସମ୍ପ୍ରଦାୟ ସେମାନଙ୍କର ରହିଛି । ଭିନ୍ନ ସମ୍ପ୍ରଦାୟରେ ବିବାହ ହୁଏ । ବିବାହ ବୟସ ପୁଅ ଠାରୁ ଝିଅର ବୟସ ଅଧିକ ହୋଇଥାଏ । ଏକାଧିକ ବିବାହ, ଛାଡ଼ପତ୍ର ପରେ ବିବାହ, ପୁଅ ଝିଅ ଉଭୟଙ୍କ ପକ୍ଷରେ ଚଳେ । ଏକାଧିକ ସ୍ତ୍ରୀ ବିବାହ କରନ୍ତି ।

ଦିନରେ ଖାଟନ୍ତି ଏବଂ ସନ୍ଧ୍ୟାହେଲେ ସେମାନେ ପିଅନ୍ତି ହେଲୁ ମଦ୍ୟ । ପ୍ରତ୍ୟେକ ଲୋକଙ୍କର ଗୋଟିଏ ଗୋଟିଏ ଖଜୁରୀ ବା ସଲପ ଗଛ ନିଜ ମାଲି-

କାନାରେ ଥାଏ । ସେଥିରେ ବନ୍ଧା ହୋଇଥାଏ ଠେକ । ସେଥିର ମଧ୍ୟ ଯନ୍ତ୍ର ଅନ୍ୟ କେହି ବ୍ୟବହାର କରିପାରେ ସେ ଆପଣାର ଭାଇ ହେଉକ ପୁଅ ହେଉ ମାଲିକ ଗାଞ୍ଚ ଚଳାଇ କମ୍ବା ଟାଙ୍ଗିଆରେ ହତ୍ୟା କରିଦିଏ । ବଣ୍ଡା ପଡ୍ୟବାଧ, ଜୀବନରେ କେବେ ମିଥ୍ୟା କହେନାହିଁ । ହତ୍ୟାକାରୀ ନିଜେ ମୃତ ଶରୀର କମ୍ବା ତା'ର ମଥାକୁ ଧରି ଥାନାରେ ପହଞ୍ଚି ବୟାନ ଦିଏ ।

କୌଣସି ସଭ୍ୟ ଶିକ୍ଷିତବ୍ୟକ୍ତିଙ୍କୁ ଦେଖିଲେ ଅନଷ୍ଟକାରୀ ବୋଲି ଭାବନ୍ତି, ରାଗିଗଲେ ପ୍ରାଣନାଶ ମଧ୍ୟ କରନ୍ତି । କୌଣସି ମହିଳାଙ୍କୁ ଦେଖିହେସିଲେ କମ୍ବା । କୌଣସିସ୍ତ୍ରୀ ଲୋକର କାନ୍ଧରେ ହାତରଖିଦେଲେ ଅଶ୍ଳୀଳ ଅଭିଯୋଗରେ ସେମାନେ ଖୁପଣ ରାଗିଯାଆନ୍ତି ଏବଂ ହତ୍ୟା କରିବା ପାଇଁ ପଛାନ୍ତି ନାହିଁ, ଏଇ ସବୁ ପ୍ରାଣ ଭୟ କାରଣରୁ କୌଣସି ସଭ୍ୟ ଲୋକ ବଣ୍ଡାଘାଟି ଭିତରକୁ ଯିବାପାଇଁ ଭୟ କରନ୍ତି ଏବଂ ସେମାନଙ୍କ ଭାଷାବୁଝିବା ଓ ବୁଝାଇବାର ଅସୁବିଧା ମଧ୍ୟ ସେମାନଙ୍କୁ ବଞ୍ଚିତ କରି ରଖିବାର ଅନ୍ୟତମ କାରଣ ।

ଦୈପାଟବୁଡ଼ା ଅଞ୍ଚଳ କୁଡ଼ୁମୁଲୁଗୁମା ଗ୍ରାମ ଠାରେ ବଣ୍ଡା ଉନ୍ନୟନ ପ୍ରକଳ୍ପର ମୁଖ୍ୟ କାର୍ଯ୍ୟାଳୟ ଓ ପ୍ରକଳ୍ପ ଅଧିକାରୀ ବା ପ୍ରକଳ୍ପ ପ୍ରଶାସକ ରହିଛନ୍ତି ଏବଂ ମାଲକାନଗିରି ସଦର ମହକୁମାରେ ଜିଲ୍ଲା ପ୍ରଶାସନ ରହିଛି । ସେ ସଂସ୍ଥାନ ପ୍ରେତକ ପ୍ରଶାସନ ନଗଡ଼ ବନ୍ଧନ ମଧ୍ୟରେ କରିବା କଥା କହୁଛନ୍ତି କିନ୍ତୁ ସମସ୍ତ ସରକାରୀ କ୍ଷେତ୍ରରେ ଯାହା ହେବାକଥା ସେଠି ସେହିଭଳି ଉଦାହରଣ ଓ ମନ୍ଥରତାରେ କିଛି ଅସ୍ୱାଭାବିକତା ନାହିଁ । କେବେ ଏଇ ବଣ୍ଡାଜାତି, କେବେ, କେତେ ବର୍ଷରେ ମହାଭାରତୀୟ ସ୍ରୋତରେ ସାମିଲ ହେବେ ଏବଂ ଶୁଦ୍ଧ ଓଡ଼ିଆ ଭାଷା କହି ମଣିଷ ଭଳି ଚଳନ୍ତିଚଳି ହେବେ ତାହାହିଁ ପ୍ରଶ୍ନବାଚୀ ।

ଏବେ ପ୍ରାୟ ୧୫/୨୦ ବର୍ଷ ହେଲା ବଣ୍ଡାଙ୍କ ହତ୍ୟା ବିଭୀଷିକା ପୂର୍ବଭଳି ଆଉ ଶୁଣାଯାଉନାହିଁ । ବର୍ବରତା ଓ ଉଦ୍ଧତତାବେଶୀ ପରିମାଣରେ କମିଯାଇଛି । ଅତଏବ ଦେଶପ୍ରେମୀ ଭାଷାବିତ ଗବେଷକ ଓ ସ୍ୱେଚ୍ଛାସେବୀମାନେ ବଣ୍ଡା ଆଦିମ ଅଞ୍ଚଳରେ ପ୍ରବେଶକରିକିଛିଟା କଷ୍ଟ ଓ ତ୍ୟାଗ ସ୍ୱୀକାର କରି ସରକାରୀ ସହାୟତା ନେଇ ବଣ୍ଡା ଜାତିକୁ ଉନ୍ନତ ସଭ୍ୟ ଶିକ୍ଷିତ ଓ ମଣିଷ ଭଳି ମଣିଷ କରି ଗଢ଼ିବା ପାଇଁ ଆଗେଇ ଆସିବା ଉଚିତ । (ସୌଜନ୍ୟ – ସାଃ ସମାଜ, ତା ୨୭-୭-୯୭) ।

—×—

ଅବିଭକ୍ତ କୋରାପୁଟ ଜିଲ୍ଲା ବା ସାଂପ୍ରତିକ ମାଲକାନଗିରି ଜିଲ୍ଲାରେ ପାହାଡ଼ ବଣ୍ଡା ଉପଜାତିର ବସତି । ଜିଲ୍ଲା ସଦର ମହକୁମାଠାରୁ ୩୦ କି.ମି: ଦୂର ଖଇରପୁଟ ଗ୍ରାମଘାଟ ସଦୋକିଙ୍କ ସହାୟତା ତଥା ଅନୁଦାନ ଗ୍ରହଣ କରି "ତଳବଣ୍ଡା" ମାନେ ନୂତନ ସଭ୍ୟତାର ଆଲୋକ ପାଇବା ଅନୁଭବ କଲେଣି, କିନ୍ତୁ ଖଇରପୁଟଠୁ ଆଉ ୫୦ କି.ମି ଦୂର ୪ ହଜାର ଫୁଟ ଉଚ୍ଚ ପାହାଡ଼ ଗିରିକନ୍ଦରେ ଥିବା ୩୦ ଗୋଟି ଗ୍ରାମର "ଉପରେ ବଣ୍ଡା" ଆଜି ବିଜ୍ଞାନ ଓ ସଭ୍ୟତାକୁ ସ୍ପର୍ଶ କରିବାକୁ ଅମଙ୍ଗ, ଅନିଚ୍ଛୁକ । ତଥାପି ସରକାରୀ ଉଦ୍ୟମ ଅବ୍ୟାହତ ରହିଛି ସେମାନଙ୍କୁ ମହାଜାତୀୟ ସ୍ରୋତରେ ସାମିଲ କରିବା ପାଇଁ ।

ତେଜ, ଲଙ୍କା, ସଲପ, କନ୍ଦା ବ୍ୟତୀତ ଉପରବଣ୍ଡା ଭାତ, ରୋଟି ଖାଇବାକୁ ଅନିଚ୍ଛା ପ୍ରକାଶ କରନ୍ତି । ମଳତ୍ୟାଗ ପରେ ପାଣିରେ ଧୋଇ ହେବା, ଦାନ୍ତ ସଫା ନ କରିବା, ସ୍ନାନ ବିରତ ହେବାଭଳି ସାଧାରଣ କଥାମାନଙ୍କୁ ସେମାନେ ମଜ୍ଜାଗତ କରି ନେଇଛନ୍ତି । ଲୁଣ, ଧୂଆଁପତ୍ର ପିକା (ସୁଟା) ଓ ମଦ ମାଛର ସୁଖୁଆ ବ୍ୟତୀତ ଅନ୍ୟ କୌଣସି କଣା ଦ୍ରବ୍ୟ ସେମାନେ ବ୍ୟବହାର କରନ୍ତି ନାହିଁ । ସଭ୍ୟ ମାନବଙ୍କୁ ଦେଖିଲେ ଅନିଷ୍ଟକାରୀ ଶତ୍ରୁ କିମ୍ବା ଲୁଣ୍ଠନକାରୀ ମନେ କରନ୍ତି ।

ବଣ୍ଡାମାନଙ୍କ ଶିକ୍ଷାର ବ୍ୟବସ୍ଥା କଲେ ସେ ଜାତିର ବିକାଶ ସମ୍ଭବ ମନେକରି ସରକାର ବିଦ୍ୟାଳୟ ଖୋଲନ୍ତି ୧୯୫୯ ଖ୍ରୀଷ୍ଟାବ୍ଦରେ । ଗଗନଚୁମ୍ବୀ ଘାଟି ପାହାଡ଼ର ପ୍ରଥମ ପ୍ରବେଶ ଗ୍ରାମରେ ଆରମ୍ଭ ହୁଏ ନିମ୍ନ ପ୍ରାଥମିକ ବିଦ୍ୟାଳୟ । ସେହି ମୁଦୁଲିପଡ଼ା ଗ୍ରାମରେ ରହୁଥିବା ଏହି ସ୍କୁଲକୁ ନିଜ ନିଜର ସନ୍ତାନଙ୍କୁ ବହୁ କଷ୍ଟରେ ଏବଂ ପ୍ରଚୁର ପ୍ରୟାସସାଧ୍ୟ ପ୍ରରୋଚନା ପରେ ଛାଡ଼ନ୍ତି ବଣ୍ଡା ଅଭିଭାବକ । ସେଠାରେ ପୁଅ ଓ ଝିଅ ଉଭୟ ବିଦ୍ୟା ଅଧ୍ୟୟନ କରନ୍ତି । ଏହି ସେବାଶ୍ରମ ଆବାସିକ ସ୍କୁଲ ୧୯୭୯ ମସିହାରେ ପ୍ରସାରିତ ହୋଇ ଏକ ଉଚ୍ଚ ପ୍ରାଥମିକ କନ୍ୟାଶ୍ରମ ପ୍ରତିଷ୍ଠା କରାଯାଏ ।

ପ୍ରାଥମିକ ବିଦ୍ୟାଳୟରେ ପୁଅପିଲା ଏବଂ କନ୍ୟାଶ୍ରମ ଉ, ପ୍ରା. ବିଦ୍ୟାଳୟରେ ଝିଅପିଲା ଅଧ୍ୟୟନ କରନ୍ତି । ୧୯୮୮ ମସିହାରେ ହାଇସ୍କୁଲ ପ୍ରତିଷ୍ଠା ହୁଏ କିନ୍ତୁ ସାମାନ୍ୟ ଅଧିକ ବୟସ୍କ ହେଲେ ଉଚ୍ଚଶିକ୍ଷା ନିମନ୍ତେ ବଣ୍ଡାମାନେ

ବଜାବଜାର ଝିଅଙ୍କୁ ପଢ଼ିବା ପାଇଁ ବାରଣ କରନ୍ତି, ତେଣୁ ବର୍ତ୍ତମାନ ସେଠାରେ ହାଇସ୍କୁଲରେ କେବଳ ପୁଅପିଲାଙ୍କୁ ଅଧ୍ୟୟନ କରନ୍ତି ।

କନ୍ୟାଶ୍ରମରେ ପୁରୀ ଜିଲ୍ଲା ଗୋପ ଅଞ୍ଚଳରୁ ଆସି ସେବାମୂଳକ ଶିକ୍ଷାଦାନ କରୁଥିବା ମହୀୟସୀ ମହିଳା ଶୈଳବାଳା ଦାଶ ପ୍ରଧାନ ଶିକ୍ଷୟିତ୍ରୀ ଭାବେ କାର୍ଯ୍ୟରତ ଅଛନ୍ତି । ଏହି କନ୍ୟାଶ୍ରମରେ ଆବାସିକ ଛାତ୍ରୀ ଅଛନ୍ତି ୧୧୭ ଜଣ । ସେମାନେ ଅଧ୍ୟୟନ ସହ ବାର୍ଜିଣ ପାତିଆରେ ସୁନ୍ଦର ଗୃହସଜ୍ଜା ଓ ଗୃହ ଉପକରଣ ବୁଣେଇ ହସ୍ତଶିଳ୍ପ ତାଲିମ ମଧ୍ୟ ନିଅନ୍ତି । ଷଷ୍ଠ ଶ୍ରେଣୀଯାଏ ଅଧ୍ୟାପନା କରାଯାଏ ।

କେନ୍ଦୁଝରରୁ ଆସି କାର୍ଯ୍ୟରତ ଅଛନ୍ତି ଜଣେ ଆଦର୍ଶ ଶିକ୍ଷକ ଶ୍ରୀ ଲକ୍ଷ୍ମୀଧର ନାୟକ, ସେ ହାଇସ୍କୁଲର ଦାୟିତ୍ୱ ବହନ କରନ୍ତି । ଅଧ୍ୟାପନା ସହ ସୁନ୍ଦର ବଗିଚାଟିଏ ମଧ୍ୟ କରିଛନ୍ତି ବିଦ୍ୟାର୍ଥୀମାନେ । ଏହି ଉଚ୍ଚ ବିଦ୍ୟାଳୟରେ କର୍ମଚାରୀମାନଙ୍କ ୬ ଜଣ ସନ୍ତାନ ଏବଂ ୩୩୪ ଜଣ ବଣ୍ଡା ଛାତ୍ର ଅଧ୍ୟୟନ କରନ୍ତି, ନିତ୍ୟ ପ୍ରଭାତରେ 'ଜ୍ୟୋତିର୍ମୟ ...' ସଂସ୍କୃତ ଶ୍ଳୋକ ପାଠକରି ପଢ଼ା ଆରମ୍ଭ କରନ୍ତି ।

ଏହି ମୁଦୁଲିପଡ଼ା ପାହାଡ଼ ଘାଟି ଗାଁରେ ଥିବା ସମସ୍ତ ଆବାସିକ ଆଶ୍ରମ ସ୍କୁଲରେ ମାଗଣା ଖାଦ୍ୟପେୟ, ପୋଷାକ, ପୁସ୍ତକ, ଔଷଧ ଇତ୍ୟାଦି ସରକାର ଦିଅନ୍ତି । ଏଠାରେ ସ୍ୱାଧୀନତା ଦିବସ, ସାଧାରଣତନ୍ତ୍ର ଦିବସ, ଶ୍ରୀ ଗଣେଶ-ପୂଜା, ସରସ୍ୱତୀ ପୂଜା ଇତ୍ୟାଦି ହୁଏ । ପୂଜା କିମ୍ବା ଅନ୍ୟ ଦିବସରେ ଭୋଜିଭାତ କିମ୍ବା ପ୍ରସାଦରେ ମିଠା, ଖାଦ୍ୟ, କ୍ଷିରି, ଲଡ଼ୁ ଇତ୍ୟାଦି ଦେଲେ ବଣ୍ଡା ଛାତ୍ରଛାତ୍ରୀ ତାହା ନଖାଇ ଫେପାଡ଼ି ଦିଅନ୍ତି, କାରଣ ଚିନି, ଗୁଡ଼ ଇତ୍ୟାଦି ମଧୁର ଦ୍ରବ୍ୟ ସେମାନଙ୍କ ରସନା ପାଇଁ ଏ'ଯାଏ ଅଭ୍ୟାସ ହୋଇନାହିଁ ।

କଣ୍ଟା ଦ୍ରବ୍ୟ ଲୁଣ ସେ ଜାତି ପାଇଁ ଦୁଷ୍ପ୍ରାପ୍ୟ, ତେଣୁ ଅତି କମ୍ ଲୁଣ ଖାଆନ୍ତି ସେମାନେ, ଲଙ୍କା କମ୍ ଖାଆନ୍ତି ପ୍ରଚୁର, ଏପରିକି ଜଣେ ଛାତ୍ର ଥରକେ ପାଏ କଞ୍ଚା ଲଙ୍କା ଖାଇଦିଏ । ତରକାରୀ ଖାଆନ୍ତି ବେଶୀ କମ୍ ପିଲାଏ ଭାତ, କେହି ସ୍ପର୍ଶ କରନ୍ତି ନାହିଁ, କେବଳ ମାଣ୍ଡିଆ ଜାଉ ପିଅନ୍ତି ।

ଏହି ଉଚ୍ଚ ବିଦ୍ୟାଳୟରୁ ୧୯୯୧ ମସିହାଠାରୁ ପ୍ରତିବର୍ଷ କିଛି କିଛି ଛାତ୍ର ମେଟ୍ରିକ ବୋର୍ଡ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଆସୁଛନ୍ତି ଏବଂ ସେମାନଙ୍କ ମଧ୍ୟରୁ ଜଣେ ବଣ୍ଡା ଛାତ୍ର ସେହି ସ୍କୁଲରେ ସହକାରୀ ଶିକ୍ଷକ ଭାବେ ନିଯୁକ୍ତି ପାଇଛନ୍ତି । ଜଣେ ବଣ୍ଡା ଛାତ୍ର ମାଲକାନଗିରି କଲେଜରେ ମଧ୍ୟ ଅଧ୍ୟୟନ କରୁଛନ୍ତି । ବର୍ତ୍ତମାନ ସେହି ହାଇସ୍କୁଲରେ ୧୭ ଜଣ ସହକାରୀ ଶିକ୍ଷକ ଅଛନ୍ତି ।

ଏହି ଆବାସିକ ଛାତ୍ରମାନେ ଛୁଟି ଦିନମାନଙ୍କରେ ନିଜ ଗୃହକୁ ଗଲେ ନିଜ ପିତା, ମାତା, ବନ୍ଧୁ କୁଟୁମ୍ବଙ୍କ ବ୍ୟବହାର୍ଯ୍ୟ ଖାଦ୍ୟ, ବାସନ ବିଛଣା ଚଦର, ଗାମୁଛା ପ୍ରଭୃତିର ବ୍ୟବହାର କରନ୍ତି ନାହିଁ । ନିଜ ଛାତ୍ରାବାସରୁ ନେଇଥିବା ବାସନ ଓ ବିଛଣାରେ ଭୋଜନ ଓ ଶୟନ କରନ୍ତି । ବଣ୍ଡା ଅଭିଭାବକ ନିଜ ପିଲାଙ୍କୁ ଇତର ମନେକରେ, ଏହା ଘୃଣା ହୋଇପାରେ, ବିଚ୍ଛିନ୍ନତା ମନୋଭାବ ହୋଇପାରେ । ମିଥ୍ୟା ଅଭିଯୋଗକାରୀ ଦଳଦଳ ବଣ୍ଡା ଧନୁ, ତୀର, ବର୍ଚ୍ଛା, କୁରାଢ଼ୀ ବିଦ୍ୟାଳୟକୁ ଆସି ଆକ୍ରମଣ କରନ୍ତି । ଶିକ୍ଷକ ଶିକ୍ଷୟିତ୍ରୀମାନେ ବିନମ୍ରଭାବେ ବୁଝାଇବା ସତ୍ତ୍ୱେ ଗାଳିଗୁଲଜ ବର୍ଷଣ ହୁଏ । ପ୍ରାଣ ଆଶଙ୍କାରେ କେବେ କବାଟ କିଳି ଶରୀର ଗୋପନ କରନ୍ତି ।

ବଣ୍ଡା ଛୁଆ ସହଜରେ ଓଡ଼ିଆ ଭାଷା ବୁଝନ୍ତିନାହିଁ । ଶିକ୍ଷକ, ଶିକ୍ଷୟିତ୍ରୀ ମଧ୍ୟ ଛାତ୍ର ଅଭିଭାବକଙ୍କ ଭାଷା ହଠାତ ବୁଝନ୍ତି ନାହିଁ । ଶିକ୍ଷା ପ୍ରସାର ଓ ବଣ୍ଡା ଉନ୍ନୟନରେ ଏହା ପ୍ରଧାନ ଅନ୍ତରାୟ ହୋଇ ଠିଆହୁଏ । ବଣ୍ଡା ଶିକ୍ଷକ ଓ ବଣ୍ଡା ଚପରାଶି ଏହି ଭାଷା ସମସ୍ୟାରେ ଅନେକ ସହାୟକ ହୋଇଥାନ୍ତି । ତା' ବ୍ୟତୀତ କେବଳ ଯେ ପାହାଡ଼ ଉପରର ବଣ୍ଡା ଛୁଆ ଏଠି ପଢ଼ନ୍ତି ତାହା ନୁହେଁ ପାହାଡ ତଳର ଚଳବଣ୍ଡା ପିଲାଏ ମଧ୍ୟ ଆସନ୍ତି । ୧୪ କି. ମି' ଦୂରରୁ ଆସୁଥିବା ଛାତ୍ରଙ୍କ ପାଇଁ କୌଣସି ଯାନବାହନର ବ୍ୟବସ୍ଥା ନାହିଁ । କିଛି ବର୍ଷ ପୂର୍ବେ ଆସୁଥିବା ଏକ "କେଣ୍ଡୋ" ମିନି ବସକୁ ମଧ୍ୟ ଏବେ ବନ୍ଦକରି ଦିଆଯାଇଥିବା ଦୁଃଖଦାୟକ ।

ଯେଉଁ ଛାତ୍ର ଛାତ୍ରୀମାନେ ଅଧ୍ୟୟନରେ ଅଭ୍ୟସ୍ତ ହେଲେଣି ସେମାନେ ସଭ୍ୟ ମଣିଷ, ଉନ୍ନତ ସହର ଓ ସଭ୍ୟତାର ଆଲୋକକୁ ଭଲପାଇ ବସିଲେଣି, ନିଜ ଜାତିର ନୃଶଂସତା ଅଜ୍ଞାନତା ଓ ହିଂସାଠାରୁ ଦୂରେଇ ଦିବାକୁ ଭଲ ମଣନ୍ତି ।

ବଣ୍ଡା ଛୁଆଛୁଆଁ ପୁରୀ, କୋଣାର୍କ, କଟକ, ଭୁବନେଶ୍ୱର ପରିଦର୍ଶନ ନିଆଯାଇ ଦର୍ଶନ ଅନୁଭୂତିରେ ବହୁତ ଖୁସି ହୋଇଛନ୍ତି । ସେ ସବୁ ଦେଖିବାରେ ବେଶୀ ଆନନ୍ଦ ପାଇଛନ୍ତି ବୋଲି କହନ୍ତି ।

ବିଦ୍ୟାଳୟରେ କେବେ କୌଣସି ଟିକିଏ ମାତ୍ର ଭୁଲ କାର୍ଯ୍ୟ ହୋଇଗଲେ ବଣ୍ଡା ଅଭିଭାବକମାନେ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ଆସି ଭାରି ଝାମେଲା କରନ୍ତି । ସନ୍ଧ୍ୟାହେଲେ ପ୍ରଚୁର ମଦ୍ୟପାନ କରିଆସନ୍ତି ଏବଂ ଅସ୍ୱସ୍ତିକର ପରିବେଶ ସୃଷ୍ଟି କରନ୍ତି । ଏ'ସବୁ ପରିସ୍ଥିତି ସହ ଶିକ୍ଷକ, ଶିକ୍ଷୟିତ୍ରୀଗଣ ଅଭ୍ୟସ୍ତ ହେଲେ ମଧ୍ୟ—ଅସୁବିଧା ମନେକରନ୍ତି, ଆଶଙ୍କିତ, ଆତଙ୍କିତ ହେବା ସ୍ୱାଭାବିକ । ଏହିଭଳି ଘଟଣାମାନଙ୍କ ସମ୍ମୁଖୀନ ହୋଇମଧ୍ୟ ଧୈର୍ଯ୍ୟଧରି ସେବା ଓ ଶିକ୍ଷାଦାନ ଅବ୍ୟାହତ ରଖିଛନ୍ତି । ତେଣୁ ସେମାନେ ଧନ୍ୟବାଦାର୍ହ ।

(ସୌଜନ୍ୟ-ସା. 'ସମାଜ' ତା ୧୫-୬-୯୭)

ମାଲକାନଗିରି ଏକ ନୂଆ ଜିଲ୍ଲା । ମାଲକାନଗିରି ସହରର ନଗର ଭବନରେ ଗତ ଫେବୃୟାରୀ ୨୧ ଓ ୨୨ ତାରିଖ ୨ ଦିନ ଓଡ଼ିଆ ସାହିତ୍ୟ ଏକାଡ଼େମୀ ପକ୍ଷରୁ ସାହିତ୍ୟ ସମ୍ମିଳନ ହେଉଥାଏ । ସେଠାକୁ ଆମେ କେତେଜଣ ସାହିତ୍ୟିକ ଯାଇଥାଉ । ୨୨ ତାରିଖ ଶେଷ ଦିନ ଉଦ୍‌ଯାପନ ହେବାପରେ ଜିଲ୍ଲା ପ୍ରଶାସନ ପକ୍ଷରୁ ଆମକୁ "ବଣ୍ଡା ଘାଟି" ପରିଦର୍ଶନରେ ଯିବାର ବନ୍ଦୋବସ୍ତ କରାଯାଇଥିଲା ।

କେତୋଟି ଜିପ୍ ଓ କାର୍ ଚାଲିଲ୍ ଘାଟିର ରାସ୍ତାରେ । ଆମ ଗାଡ଼ିରେ ମୋ ସହିତ ୪ ଜଣ ଲେଖକ ଥାଉ, ଅନ୍ୟ ୩ ଜଣ ହେଲେ କବି ଜଳଧର ସ୍ୱାଇଁ, କବି ସୁବାସ ମିଶ୍ର ଓ ଶିଶୁ ସାହିତ୍ୟିକ ଡ଼କ୍ଟର ବସନ୍ତ କିଶୋର ସାହୁ । ସଦର ମହକୁମାରୁ ୩୦ କି. ମି. ଖଇରପୁଟ ଗ୍ରାମ ଯାଏ "ବଣ୍ଡା" ନାମକ ଏକ ଦୁର୍ଦ୍ଧର୍ଷ ପାହାଡ଼ ଆଦିବାସୀ ରହନ୍ତି । ସେମାନଙ୍କ କଥା ଅଲଗା । କିନ୍ତୁ ସେଠୁ ୫୦ କି:ମି: ଉପରକୁ ପ୍ରାୟ ୪୦୦୦ ଫୁଟ ଉଚ୍ଚ ପର୍ବତ ଉପରେ ଅଛି ତିରିଶିଟି ବଣ୍ଡା ଗ୍ରାମ

ସେଠିଁ କି କୌଣସି ସଭ୍ୟ ମନୁଷ୍ୟ ଯାଇ ସାମନ୍ୟ ଚଳଣୀରେ କି ସେଥା ପ୍ରସ୍ଥା-ଗରେ ଉଠିକଲେ ନୃଶଂସ ବଣ୍ଡାମାନେ ତାକୁ ପ୍ରାଣରେ ମାରିଦେବାର ଭୟ ଥାଏ । ସେଇ 'ଉପରବଣ୍ଡା'ଙ୍କ ଚଳଣୀ ସ୍ୱତନ୍ତ୍ର ।

ଆମେ ବହୁ ରାସ୍ତା ଅତିକ୍ରାନ୍ତ କଲାପରେ ଗଗନସ୍ପର୍ଶୀ ପର୍ବତ ଶିଖରରେ ଯାଇ ପହଞ୍ଚିଲୁ । ଶିଖରର ଏକସ୍ଥାନରେ ରହିଛି ଏକ କ୍ଷୁଦ୍ର ପୁଷ୍କରିଣୀ, 'ସୀତାକୁଣ୍ଡ' । ଏହି ସୀତାକୁଣ୍ଡକୁ ଦେଖିବା କ୍ଷଣି ବଣ୍ଡାମାନେ ଭୂଇଁରେ ମୁଣ୍ଡ ଲଗାଇ ପ୍ରଣତି ଜଣାନ୍ତି । କାରଣ ଏହି ସ୍ଥଳ ସହ ତା'ଙ୍କ ପୂର୍ବପୁରୁଷଙ୍କ ସମ୍ପର୍କ ବିଶେଷ ଭାବରେ ଜଡ଼ିତ ।

ରାମାୟଣ ଓ ପୁରାଣ ବର୍ଣ୍ଣିତ କିମ୍ବଦନ୍ତୀ ହେଲା :- ଶ୍ରୀରାମ, ଲକ୍ଷ୍ମଣ ଓ ମାତା ସୀତା ଯେତେବେଳେ ବନବାସ କରୁଥିଲେ, ଦଣ୍ଡକାରଣ୍ୟରେ ଅବସ୍ଥାନ କରୁଥିଲେ କିଛିକାଳ । ଦିନେ ନିର୍ଜନ ସ୍ଥାନ ଦେଖି ସୀତାମାତା ଏହି ପୁଷ୍କରିଣୀରେ ସ୍ନାନରତା ଥିଲେ ଉଲଗ୍ନା ହୋଇ, କାରଣ ବନବାସ କାଳରେ ତାଙ୍କର ବସ୍ତ୍ରର ଅଭାବ ଥିଲା । ଅଚାନକ କେତେକ ବନବାସିନୀ ବଣ୍ଡା ରମଣୀ ସେହି ପୋଖରୀ ନିକଟକୁ ଆସିଲେ ଏବଂ ସୀତା ଦେବୀ ଉଲଗ୍ନା ହୋଇଥିବା ଦେଖି ହାସ୍ୟ ଉପହାସ କଲେ । ମାଁ ସୀତା କ୍ରୋଧିତ ହେଲେ ଏବଂ କହିଲେ :- "ତୁମେ ନାରୀ ହୋଇ ମଧ୍ୟ ଅନ୍ୟ ଜଣେ ନାରୀର ଅସୁବିଧା ନ ବୁଝି କେବଳ ଉଲଗ୍ନ ଶରୀରକୁ ଦେଖି ହସୁଛ, ତେଣୁ ମୁଁ ଅଭିଶାପ ଦେଉଛି, ଆଜଠାରୁ ବଣ୍ଡା ରମଣୀ ସର୍ବଦା ବସ୍ତ୍ରହୀନା ହୋଇ ରହିଥିବ, ଯେବେ ବସ୍ତ୍ର ପରିଧାନ କରିବ, ତୁମ ଜାତିର ଘୋର ଅନିଷ୍ଟ ଘଟିବ ।"

ସ୍ତବ୍ଧ ହୋଇଗଲେ ବଣ୍ଡାନାରୀଗଣ । ସେଇଦିନୁ ସତୀ ବାକ୍ୟକୁ ମାନ୍ୟତା ଦେଇ ବଣ୍ଡା ମହିଳାମାନେ ଆଜ ପର୍ଯ୍ୟନ୍ତ କୌଣସି ପ୍ରକାର ଲୁଗା ପିନ୍ଧନ୍ତି ନାହିଁ । ବିନପଟ ଓ ଏକ ବାଇଁଚ ଜାତୀୟ ଫଳର ବା କୋଳଅଞ୍ଜିରେ ମାଳଗୁଚ୍ଛି ଦେହ ଭଳ ପରିହିତ ହୋଇ ଲଜ୍ଜା ନିବାରଣ କରନ୍ତି । ବିଶେଷ ଭାବେ ପାହାଡ଼ ତଳକୁ ଓହ୍ଲାଇବା ପାଇଁ ଇଚ୍ଛା କରନ୍ତି ନାହିଁ ।

ଏଣିକି ମାଁ ଜନକନନ୍ଦିନୀ ସୀତା ସ୍ନାନ କଲା ବେଳେ ସର୍ବସ୍ୱା ହୋଇ ଜଳ ମଧ୍ୟକୁ ପ୍ରବେଶ କରନ୍ତି । ଅନ୍ୟ ଏକ ଦିନ ମାଁ ସୀତା ସେହି ପୁଷ୍କରିଣୀରେ

ସ୍ନାନ ସାରି ମୁଣ୍ଡବାଳକୁ ପବନରେ ଶୁଖାଉଥିଲେ । ହଠାତ୍ ଦଳେ ବଣ୍ଡା ଲଳନା ଆସି ସୀତାଙ୍କୁ ଦେଖି ପ୍ରବଳ ହାସ୍ୟରୋଳ କଲେ । ସୀତା ସେମାନଙ୍କୁ ହସିବାର କାରଣ ଜିଜ୍ଞାସା କଲେ । ସୀତା ଥିଲେ ମହାଲକ୍ଷ୍ମୀଙ୍କ ଅବତାର, ପଦ୍ମ ଜାତସ୍ୱ ନାରୀ । ତେଣୁ ତାଙ୍କ ମଥାର କେଶ କଟି ଦେଶ ଅତିକ୍ରମ କରି ଲମ୍ବି ଯାଇଥିଲା । ଏତେ ପରିମାଣରେ କେଶ ଦେଖି ବଣ୍ଡାନାରୀମାନେ କୌତୁହଳ ବଶତଃ ଉପହାସ କଲେ । ସୀତା ରାଗରେ ଶାପଦେଲେ - "ତୁମ ଜାତିର ସ୍ତ୍ରୀ ଲୋକେ ମୁଣ୍ଡବାଳ ସମ୍ପୂର୍ଣ୍ଣ କାଟି ସବୁ ଲଣ୍ଡାହୋଇ ରହିବ, ଏଥିରେ ବ୍ୟତିକ୍ରମ ହେଲେ ତୁମ ଜାତିରେ ବନାଶଙ୍କିତ ଉପୁଜିବ ।" ଏହି ଅଭିଶାପ ଭୟରେ ବର୍ତ୍ତମାନ ସୁଦ୍ଧା ବଣ୍ଡା ମହିଳାମାନେ ସବୁବେଳେ ମୁଣ୍ଡବାଳ କର୍ତ୍ତନକରି ଲଣ୍ଡା ହୋଇ ରହିଥାନ୍ତି । ଏଇ କାରଣରୁ ସ୍ମୃତି ସ୍ୱରୂପ ପୋଖରୀର ନାମ ରଖାଯାଇଛି ସୀତାକୁଣ୍ଡ ।

ଆମେ ଯେଉଁ ଘାଟିରେ ପହଞ୍ଚିଥିଲୁ ସେଠି ଗୋଟିଏ ଅତିଥି ନିବାସ ଏବଂ ବଣ୍ଡା ଉନ୍ନୟନ ବ୍ଲକଲର "ଆଶ୍ରା" ନାମକ ବୟନ ଶିଳ୍ପ ତାଲିମ କେନ୍ଦ୍ର ରହିଛି । ଏଠି ବଣ୍ଡାମାନେ ଲୁଗାବୁଣା ଶିକ୍ଷାକରି ସୁନ୍ଦର ସୁନ୍ଦର ଚାଦର ଓ ଗାମୁଛା ତିଆରି କରନ୍ତି । ମୋତେ ସାହିତ୍ୟ ସମାବେଶରେ ସମ୍ବର୍ଦ୍ଧନା ଦେଇ ମାନପତ୍ର ସହ ବସ୍ତ୍ର ଭରଣ ଭାବେ ଯେଉଁ ଉପଢୌକନ ମିଳିଥିଲା ତାହା ଥିଲା ଏଇ ବଣ୍ଡାମାନଙ୍କ ହସ୍ତ ପ୍ରସ୍ତୁତ ଏକ ଲାଲ ଚାଦର । ତାର ବୟନ, ରଙ୍ଗ ଓ ରୂପରେଖ ଭାରି ଚମତ୍କାର ଅଟେ ।

ଏଠି 'ଆଶ୍ରା' ଅନୁଷ୍ଠାନ ବ୍ୟକ୍ତିତ ବାଉଁଶ ପାତିଆରେ କରାଯାଉଥିବା ଶିଳ୍ପ ବା ହସ୍ତଶିଳ୍ପର ଏକ ପ୍ରଶିକ୍ଷଣ କେନ୍ଦ୍ର ମଧ୍ୟ ରହିଛି । ସେଠାରେ ବଣ୍ଡା ଝିଅମାନେ ବାଉଁଶ ପାତିଆ କାଟି ସେଥିରେ ଫୁଲ ଗଛ ଓ ଫୁଲଦାନୀମାନ ଏପରି ସଜାଉଛନ୍ତି ଯେ, ହଠାତ୍ ଦେଖିଲେ ତାହା କାଗଜ କିମ୍ବା ପ୍ଲାଷ୍ଟିକରେ ତିଆରି ଭଳି ମନେ ହେଉଛି । ତା'ଛଡ଼ା ବାଉଁଶ ପାତିଆରେ ବ୍ୟାଗ୍ ବା ଥଳି, ମସିଣା ଆଦି ଭାରି ସୁନ୍ଦର ଭାବରେ ପ୍ରସ୍ତୁତ କରୁଛନ୍ତି ।

ଏହି ପାହାଡ଼ ଶିଖରରେ ଥିବା ଗ୍ରାମର ନାମ ମୁଦୁଲିପଡ଼ା । ସେ ଅଞ୍ଚଳର ବାସିନ୍ଦା ବଣ୍ଡାମାନେ ପ୍ରାଗ୍‌ଐତିହାସିକ ମାନବଭଳି ଦାନ୍ତ ନଘଷି, ବିନା ସ୍ନାନରେ ଏବଂ ମଳତ୍ୟାଗ କଲେ ଡାଳପତ୍ରରେ ପରିଷ୍କାରକରି ଏବେଯାଏ ଜୀବନ ବିତାଉଛନ୍ତି । ଧନୁତୀର ଧରି ଶିକାର କରୁଛନ୍ତି । ଏହି ଆଦିମ ବଣ୍ଡାମାନଙ୍କୁ ସଭ୍ୟତାର

ସ୍ରୋତରେ ସାମିଲ କରିବା ପାଇଁ ସରକାର କିଛି ବର୍ଷ ହେଲା ଯୋଜନାବଦ୍ଧ କାର୍ଯ୍ୟ କରୁଛନ୍ତି । ୧୯୫୯ ମସିହାରୁ ଆରମ୍ଭ ହୋଇଛି ମୁଦୁଲିପଡ଼ା ସେବାଶ୍ରମ ପ୍ରାଥମିକ ବିଦ୍ୟାଳୟ, ୧୯୭୯ ମସିହାରୁ କନ୍ୟାଶ୍ରମ ଏବଂ ୧୯୮୮ ମସିହାରୁ ଛାତ୍ର-ବାସ ସୁବିଧାଥାଇ ହାଇସ୍କୁଲ । ଏହି ବିଦ୍ୟାଳୟ ମାନଙ୍କରେ ସମ୍ପୂର୍ଣ୍ଣ ମାଗଣାରେ ଖାଦ୍ୟ, ବସ୍ତ୍ର ଔଷଧ, ପୁସ୍ତକ ଇତ୍ୟାଦି ସୁବିଧା ଦେଇ ପାଠ ପଢ଼ା ଯାଉଛି । ବହୁ କଷ୍ଟରେ ପାହାଡ଼ ବଣ୍ଡା ଛାତ୍ର, ଛାତ୍ରୀମାନେ ଅଧ୍ୟୟନ କରିବା ପାଇଁ ମଙ୍ଗ ଛନ୍ତି ।

ଆମକୁ ଉକ୍ତ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଶ୍ରୀ ଲକ୍ଷ୍ମୀଧର ନାୟକ ଓ କନ୍ୟାଶ୍ରମର ପ୍ରଧାନ ଶିକ୍ଷୟିତ୍ରୀ ଶୈଳବାଳା ଦାଶ ଖୁବ୍ ଆଗ୍ରହର ସହ ପାଛୋଟି ନେଇ କାର୍ଯ୍ୟାଳୟ କକ୍ଷରେ ବସାଇ ଗୃହା, ଜଳଖିଆ ଦେଲେ । କହିଲେ ଆମ ସ୍କୁଲରେ ଗଣେଶ ପୂଜା, ସରସ୍ୱତୀ ପୂଜା ସବୁହୁଏ । ପ୍ରସାଦ ମଧ୍ୟରେ ଥିବା କାକରା, ଲଡ଼ୁ, ପାୟସ ଆଦି ଖାଇବାକୁ ଦେଲେ ବଣ୍ଡା ପିଲାମାନେ ତାହାକୁ ଲୁଚାଇ ନେଇ ବାହାରେ ଫୋପାଡ଼ି ଦିଅନ୍ତି, କାରଣ ସେମାନେ ମିଠା ଜିନିଷ ଚାଖିବା ଏ'ଯାବତ୍ ଅଭ୍ୟାସ କରିନାହାନ୍ତି । ଭାତ ଖାଆନ୍ତି ପ୍ରବଳ । ଗୋଟିଏ ଗୋଟିଏ ଛାତ୍ର ପାଏ କଲେ କଞ୍ଚାଲଙ୍କା କାମୁଡ଼ି କାମୁଡ଼ି ଭାତ ସହ ଖାଆନ୍ତି । ଲୁଣ ଖାଆନ୍ତି ଅତି କମ୍ । ପରିବା ସିଝା ପ୍ରଚୁର ଖାଆନ୍ତି । ପିଲାଏ ସ୍ଥଳଭ୍ରମଣରେ କଟକ, ପୁରୀ, ଭୁବନେଶ୍ୱର, କୋଣାର୍କ ବୁଲିଆସି ବେଶ୍ ଖୁସି ହୋଇଛନ୍ତି ।... ଏମିତି ଅନେକ କଥା—ସେ ସବୁ ଦର୍ଶନ ଓ ଶ୍ରବଣର ସ୍ମୃତି ଚିରଦିନ ଜୀବିତ ରହିବ ନିଶ୍ଚୟ ।( ସୌଜନ୍ୟ—'ଶ୍ରୀଧାରା' ଜୁନ୍-୯୬) ।



ଅବିଭକ୍ତ କୋରାପୁଟ ତଥା ସଂପ୍ରତି ଚାରିଭାଗ ହୋଇଥିବା ନବରଙ୍ଗ-ପୁର, କୋରାପୁଟ, ମାଲକାନଗିରି ଓ ରାୟଗଡ଼ା ଜିଲ୍ଲାରେ ଥିବା ଆଦିବାସୀ ବା ବନବାସୀ ମାନଙ୍କ ମଧ୍ୟରେ ଗଣ୍ଡ, ପରଜା, ବଣ୍ଡା, ଗାଦବା, କନ୍ଧ ଆଦି ବହୁ ଓଡ଼ିଆ ଉପଜାତି ବା ବନଜାତି ରହିଛନ୍ତି କିନ୍ତୁ ସାମାନ୍ୟଭେଦ ଛାଡ଼ିଦେଲେ ପ୍ରାୟତଃ ସମସ୍ତ ସଂପ୍ରଦାୟର ସଂସ୍କୃତି, ଖାଦ୍ୟପେୟ ଓ ରୀତି ଚଳଣି ଏକପ୍ରକାର । ଏହି ପର୍ବାଣି ପାଳନ ନୃତ୍ୟ ଗୀତ ଆଦି ସାଂସ୍କୃତିକ କ୍ଷେତ୍ରରେ ସେମାନଙ୍କ ଉତ୍ସାହ ଓ ଉନ୍ମାଦନା ବେଶ ଲକ୍ଷଣୀୟ । ଅର୍ଥଠାରୁ ଆତ୍ମାକୁ ସେମାନେ ସର୍ବଦା ଗୁରୁତ୍ୱ ଦେଇ ଆସିଛନ୍ତି ।

ମଧ୍ୟ ମାସ 'ଚୈତ୍ର'ରେ ପାଳିତ ହେଉଥିବା "ଚଇତ ପରବ" ବନବାସୀ ଓ ଗିରିଜନମାନଙ୍କ ଏକ ବିଶିଷ୍ଟ ପର୍ବ । ସମସ୍ତ ଜାତିର ଗୁଡ଼ି ନାମକ ଦେବୀ ମନ୍ଦିର ଓ ଘରେ ଘରେ ଏହା ପାଳିତ ହୋଇଥାଏ । ଏହି ଆଦିବାସୀ ଅଞ୍ଚଳରେ "ଢେ଼ମସା" ନାଚ ସାଙ୍ଗକୁ ଚଇତ ପରବ ଗୀତ ବେଶ ପ୍ରସିଦ୍ଧ ।

"ପାନ ମାରିଗଲା ଝାଇଁ, ପାନ ମାରିଗଲା ଝାଇଁରେ ଦାଦା : (ଟେକ)
ପାନ ମାରିଗଲା ଝାଇଁ
ବାଟର କୁଡ଼ିଆ ତୋହର ପାଇଁ, ବନାଇ ରଖିଛି ମୁହିଁ ।"

ଏହି ଗୀତ ଗାଇ ଅର୍ଥ ଓ ଚାଉଳ ମାଗିଆଣି ସାରା ଗାଁର ଲୋକେ ଭୋଜିକରି ଖାଆନ୍ତି ।

ଏହି ଗୀତ ସର୍ବଜନ ବିଦିତ । ଏହାର ଅର୍ଥ ଯୁବକ ଯୁବତୀ ଜଣକୁ କହୁଛି—"ଏବେ ବର୍ଷା କାଳ ଆସିଯିବାରୁ ଝାଇଁ ଝାଇଁ ଶବ୍ଦ କରି ବର୍ଷା ହେଉଛି, ତୋ'ପାଇଁ ରାସ୍ତା କଡ଼ରେ ଗୋଟିଏ କୁଡ଼ିଆ ଘର ବା କୁଟୀର ବନାଇ (ତିଆରିକରି) ରଖିଛି, ତୁ ମୋତେ ସ୍ୱାମୀ ରୂପେ ବରଣ କଲେ ସେଠି ନେଇଁ ତୋତେ ରଖିବି ।" ଏଭଳି ଗୀତ ଦ୍ୱାରା ବେଳେବେଳେ ଝିଅମାନେ ପ୍ରଲୁବ୍ଧ ହୋଇ ରାସ୍ତାଘାଟ, ବଜାର ହାଟ, ଯାତ୍ରା ଉତ୍ସବରୁ ବର ବରଣକରି ଚାଲିଯାନ୍ତି । ଏ'ଭଳି ଗାନ୍ଧର୍ବ ବିବାହକୁ ସେମାନେ "ଉଦୁଲିଆ" ନେଲା ବୋଲି କହୁଥାନ୍ତି । ପିତା, ମାତାଙ୍କ ଅଜାଣତରେ ଏଇ ଭଳି ଅସ୍ବୃନକ 'ଉଦୁଲିଆ' ବାହା ହେବା ଶୁଣିଲେ କନ୍ୟା ପକ୍ଷର ଲୋକେ ସଦଳବଳେ ବର ଘରକୁ ଯାଇ ଜରିମାନା ଟଙ୍କା ଆଦାୟ କରନ୍ତି, ଏହି ଜରିମାନାକୁ "ଝୋଲା" କୁହାଯାଏ, ଏହି ଅର୍ଥରେ ବନ୍ଧୁମାନେ ଭୋଜି କରି ଖାଆନ୍ତି ।

ଏଇ ଚଇତ ପର୍ବ ହେଉଛି ମୁଖ୍ୟତଃ ପରଜା ଜାତି ମୁଖ୍ୟ ପର୍ବ । ତେଣୁ ଚୈତ୍ର ମାସରେ ପରଜା ରମଣୀଗଣ ଦଳଦଳ ହୋଇ ଘର ଘର ଭିକ୍ଷା ସଂଗ୍ରହ କରି ବୁଲନ୍ତି, ସେତେବେଳେ ସେମାନେ ଅତି ଲଳିତ କଣ୍ଠରେ ସମବେତ ଗୀତ ଗାଇଥାନ୍ତି—

"ସୀତା କନିଆଁ ବାହା ହୋଇଲା " ଇତ୍ୟାଦି ।

ସେମାନଙ୍କର ବିଶ୍ୱାସ ଯେ ଏହି ମାସରେ ଜନକନନ୍ଦିନୀ ସୀତା ଦଶରଥ ସୁତ ଶ୍ରୀରାମଚନ୍ଦ୍ରଙ୍କୁ ବାହା ହୋଇଥିଲେ । ସେମାନଙ୍କର ଏହି ପର୍ବ ପାଳନର ଉଦ୍ଦେଶ୍ୟ କିନ୍ତୁ ଭିନ୍ନ, ପର୍ବର ମୂଳ ଉଦ୍ଦେଶ୍ୟ ହେଉଛି "ଆମ୍ବ ନୂଆଖିଆ" । ସାଧାରଣତଃ ଓଡ଼ିଶାରେ ଫାଲଗୁନ ଦୋଳପୂର୍ଣ୍ଣିମା ଦିନ ଉତ୍କଳବାସୀ ଠାକୁରଙ୍କ ନିକଟରେ ନୂତନ ଫଳ ଆମ୍ବ କଷି ଓ ହରଡ଼ ଖଜା ଭୋଗକରି ଖାଆନ୍ତି । ହେଲେ ଆଦିବାସୀମାନେ ତାଙ୍କ 'ଶିର' ନାମକ ଦେବୀ ସାଧକ ଓ 'ଦିଶାରୀ' ନାମକ ବନବାସୀ ଜ୍ୟୋତିଷ ଚୈତ୍ରମାସ ମଧ୍ୟରେ ଯେଉଁ ଦିନଟି ବାଛିଥାନ୍ତି ସେଦିନ ନୂଆଖିଆ ହୁଏ ଏବଂ ଘରେ ଘରେ ପ୍ରଥମ କରି କାନ୍ଦୁଲ (ହରଡ଼) ଭଜାଯାଏ, ଆମ୍ବ ଖିଆଯାଏ ।

ଏହି ଚୈତ୍ର ମାସରେ ସର୍ବତ୍ର ଦେବୀ ପୂଜନ ଓ ଦେବୀଙ୍କ ଉତ୍ସବମାନ ପାଳିତ ହୁଏ । ଠିକ୍ ସେହିଭଳି ଆଦିବାସୀ ଅଞ୍ଚଳର ପ୍ରତ୍ୟେକ ଗ୍ରାମରେ ଦେବୀ ମନ୍ଦିର (ଗୁଡ଼ି) ଥାଏ ଏବଂ ପ୍ରତି ଗ୍ରାମର ବରଗଛ ମୂଳରେ କିମ୍ବା ସଳପ ଗଛତଳେ ଦେଉଟିଏ ଗୋଟିଏ ପଥରକୁ ଗ୍ରାମଦେବତା ଭାବରେ ପୂଜା କରାଯାଏ । ଆଞ୍ଚଳିକ ରୀତିରେ ଭିନ୍ନ ଭିନ୍ନ ଦିବସରେ ଭିନ୍ନ ଭିନ୍ନ ଗ୍ରାମରେ ଦେବୀଙ୍କ ନିକଟରେ କଷି ଆମ୍ବ, କାନ୍ଦୁଲ ଭଜା ପାଚିଲା କଦଳୀ, ମହୁଆ, ପଣା ଆଦି ପୂଜା କରାଯାଏ । ବଳିଦେଇକରି ଏହି ପର୍ବରେ ସିନ୍ଦୁର ସହ 'ଧାତକୀ' ଓ ପଳାଶ ଫୁଲ ଅର୍ପଣ କରାଯାଏ । ଏହି ମାସରେ ଚଇତପର୍ବ ବ୍ୟତୀତ 'ମେରିଆ'[2] ଗୁରୁମାଈ ନାଚ, ନାଟକ, ଅପେରା ଇତ୍ୟାଦି ହୋଇଥାଏ । ସମସ୍ତ ଲୋକ, ଆବାଳ ବୃଦ୍ଧ ବନିତା ନବବସ୍ତ୍ର ପରିଧାନ କରନ୍ତି, ଦୂର ଦୂରାନ୍ତରେ ଥିବା ବନ୍ଧୁ କୁଟୁମ୍ବ ଲୋକଙ୍କୁ ନିମନ୍ତ୍ରି ଆଣି ଘରେ ଘରେ ଭୋଜି ଭାତ କରନ୍ତି । ଏହି ଚଇତ ପର୍ବ ବେଳେ ବଣକୁ ଯାଇ ହରିଣ ସମ୍ବର, କୁଟୁମ୍ବ ଆଦି ବନ୍ୟଜନ୍ତୁ ଶିକାର କରି ଆଣିବା ପ୍ରଥା ଥିଲା, ଏବେ କିନ୍ତୁ ବନକ୍ଷୟ ଓ ଲୋପ ହେବାରୁ ସ୍ୱତଃ ସେ ପ୍ରଥା ଲୋପ ହୋଇଯାଇଛି । ଧାର୍ମିକ ଓ ସାଂସ୍କୃତିକ ଅନ୍ୟାନ୍ୟ କାର୍ଯ୍ୟକ୍ରମ ବେଶ ଆନନ୍ଦ ଉଲ୍ଲାସ ସହ ପାଳନ କରାଯାଉଛି । ଏହିଭଳି ପର୍ବ, ଉତ୍ସବାନୁଷ୍ଠାନ ଓ ବିବାହାଦିରେ ଏବଂ 'ବେହରଣ' ନାମକ ଗ୍ରୀଷ୍ମପର୍ବ ସମିତିରେ ମଦ୍ୟପାନର ପ୍ରାବଲ୍ୟ ଦେଖାଯାଏ, ଏ କଥା ସତ୍ୟ ଯେ ଆଦିବାସୀମାନେ ପ୍ରଲୁବ୍ଧ ଅନୁସୂଚିତ ମନର ପ୍ରଭାବରେ ମଦର ବ୍ୟବହାର କରୁଥିଲେ ମଧ୍ୟ ଏବଂ ଜୀବାଜୀ ନିବାହର ଅନ୍ୟପନ୍ଥା ନପାଇ ମଦ୍ୟ ସେବନ କରୁଥିଲେ ମଧ୍ୟ ମଦର ଜୀବନନାଶୀ କୁପ୍ରଭାବକୁ ସ୍ୱୀକାର କରନ୍ତି । ଅନନ୍ତରସର ତଥା ଶରୀର

ଅଞ୍ଚଳରେ ସମ୍ପୂର୍ଣ୍ଣ ନିଶାନିବାରଣ ହେଲେ ଶିକାର ପ୍ରଥା ବନ୍ଦ ହୋଇଯିବ । ଏହି ବନବାସୀମାନେ ଜ୍ୟେଷ୍ଠ ମାସକୁ 'ଲଣ୍ଡି ମାସ' ନାମରେ ନାମିତ କରି ଏ'ମାସରେ କୌଣସି ଶୁଭକାର୍ଯ୍ୟ କରନ୍ତି ନାହିଁ । ମାର୍ଗଶିର ମାସକୁ ସେମାନେ 'ପଣ୍ଡ' ବା 'ଚଣ୍ଡୁ' ମାସ କହନ୍ତି । ଚୈତଭଳି ଭାଦ୍ରବ ମାସ ମଧ୍ୟ ସେମାନଙ୍କପାଇଁ ଏକ ବିଶିଷ୍ଟ ମାସ ଏବଂ ମାସରେ ସେମାନେ 'ନୂଆଖାଇ' ପର୍ବ ପାଳନ କରନ୍ତି, ଚୈତ୍ରମାସପରି ସମସ୍ତ କାର୍ଯ୍ୟକ୍ରମ ପାଳିତ ହୋଇଥାଏ କିନ୍ତୁ ଏହା ବର୍ଷାକାଳ ହେତୁ ନାଚ ଗୀତ ଆଦି ବିଶେଷ ସାଂସ୍କୃତିକ କାର୍ଯ୍ୟକ୍ରମ କରାଯାଏ ନାହିଁ । ନୂତନ ତଣ୍ଡୁଳ ଭକ୍ଷଣ କରିଥାନ୍ତି ।

ଦଶହରା ପୂଜା ଅବସରରେ ସେମାନେ ବାଉଁଶ ଗୁଡ଼ ଏବଂ ବୃକ୍ଷ ମୂଳ ଗ୍ରାମ ଦେବତାଙ୍କ ନିକଟରେ ମହାଷ୍ଟମୀ ଓ ଦଶହରା ଦିନ ପୂଜା ଓ ବଳି ପ୍ରଦାନ କରନ୍ତି । ଦଶହରାରେ ନିକଟ ସହରକୁ ସେମାନଙ୍କ 'ଲାଠିଦେବତା' (ଦେବୀ)ଙ୍କୁ ନିଅନ୍ତି, କେତେକ ଲାଠିରେ ବିଜୟ ପତାକା ଉଡ଼େ ଏବଂ ପ୍ରାୟ ବହୁସଂଖ୍ୟକ ଲାଠିରେ ପୁରା ମୂଳରୁ ଚୂଳଯାଏ ବସ୍ତ୍ର ବେଷ୍ଟିତ ହୋଇଥାଏ । ପୁଣି ମଝି ମଝିରେ ରୂପାର ମୁକୁଟ ଲାଗି ହୋଇଥାଏ, ଅଗ୍ରଭାଗରେ ତମ୍ବା କମ୍ବା ପିତଳର ଗମ୍ବୁଜାକୃତି ଛତ୍ର ଶୋଭାପାଇ ସେଥିରେ ଧାତୁର ଝୁଲ ଝୁଲୁଥାଏ । ଏହି ଲାଠିକୁ ବାଦ୍ୟବାଜଣା, ଘଣ୍ଟି ସହ ଶୋଭାଯାତ୍ରାରେ ନିଆଯାଏ । ଜଗନ୍ନାଥପୁରରୁ ନବରଙ୍ଗପୁର, ଅମରକୋଟରୁ ଜୟପୁର ଦଶହରାକୁ ପାଦରେ ଚାଲି ଚାଲି ପହଁଚିଥାନ୍ତି ।

ଲାଠି ବ୍ୟତୀତ ସେମାନଙ୍କର 'ଡ଼ୋଲି' ଦେବତା ମଧ୍ୟ ଅଛନ୍ତି, ସାଧାରଣତଃ ଏହା 'ସିରା' ଘରେ ଥାଏ । କାହାର ବାଧିକା, କିମ୍ବା ହଜିବା ଇତ୍ୟାଦି କାର୍ଯ୍ୟରେ ମାଲିକ ନିମନ୍ତ୍ରଣ କଲେ ଘଣ୍ଟି, ବାଦ୍ୟ ସହ ଏହି ଡ଼ୋଲି ନାମକ ସୁସଜ୍ଜିତ, କଉଡ଼ି ଓ ବସ୍ତ୍ର ବେଷ୍ଟିତ ଚଉକି ଯାଇ ସମସ୍ୟାର ସମାଧାନ କରେ ।

ଆଦିବାସୀମାନେ ହିନ୍ଦୁ ଧର୍ମର ସକଳ ଗୀତ ନୀତକୁ ମାନ୍ୟତା ଦେଇ ଥିଲେ ମଧ୍ୟ ରଥଯାତ୍ରା ବ୍ୟତୀତ ଅନ୍ୟ ବୈଷ୍ଣବ ପର୍ବରେ ବିଶେଷ ଆଗ୍ରହ ଦେଖାନ୍ତି ନାହିଁ । କେତେକ ଉନ୍ନତ ଅଞ୍ଚଳରେ ଅଷ୍ଟପ୍ରହରୀ ନାମଯଜ୍ଞ କରିଥାନ୍ତି, କେତେକ ଲୋକ ଗୁରୁ ଦୀକ୍ଷା ନେଇ ତୁଳସୀ ମାଳ ଧାରଣ କରିଛନ୍ତି କିନ୍ତୁ ସେମାନେ କାର୍ତ୍ତିକ ଓ ମାଘ ମାସର ପ୍ରତ୍ୟେକ ସୋମବାର ତଥା ଶିବରାତ୍ରୀ ଦିନ ଶିବ ମନ୍ଦିରମାନଙ୍କୁ ଭୋଗଥାଳି ଧରି ଯାଆନ୍ତି, ରାତ୍ରୀ ଉଜାଗର ରହନ୍ତି ।

ଚୈତ୍ର ଓ ଭାଦ୍ରବ ଭଳି ସେମାନଙ୍କର ପୌଷ ମାସ ମଧ୍ୟ ଏକ ପର୍ବ, ଉତ୍ସବର ମାସ । ପୌଷ ପୂର୍ଣ୍ଣିମା ଆଗରୁ, ଶୁକ୍ଳ ପକ୍ଷରେ ସେମାନେ ବଭିନ୍ନ ନୃତ୍ୟ, ସ୍ୱାଙ୍ଗ ଫାର୍ସ ଇତ୍ୟାଦି ବାହାର କରି ଘର ଘର ବୁଲନ୍ତି, ଧାନ, ଗୁଡ଼ଚ ଓ ମାଉଶା ସଂଗ୍ରହକରି ଭୋଜିକରନ୍ତି । ପୂର୍ଣ୍ଣିମା ଆଗ, ପଛ ତିନି ଦିନ 'ଛେରଛେର' ଡ଼ାକନ୍ତି । ଏହାର ଗୀତ— "ମୋର ମାଇଜି ଦୁମଣ୍ଡା । ଗୁନ ଉପରେ କୁମଣ୍ଡା । ଛେର୍ ଛେର୍, ଅଇଁ ଅଇଁ .. ।"

ମାଇଜି—ପତ୍ନୀ, କୁମ୍ଭଣ୍ଡା—କଖାରୁ, ଗୁନ—ଗୃହ, ଅର୍ଥାତ୍ ମୋର ସ୍ତ୍ରୀ ଲଙ୍ଗୂଳୀ, ଗୃହ ଉପରେ ଥିବା କଖାରୁ ଭଳି । ଏଭଳି ସମଗ୍ର ଆଦିବାସୀ ଜନଜାତି ପୁଷପର୍ବ ପାଳନ କଲାବେଳେ ଭତ୍ରା ଓ ଅମନାତ୍ୟ ଜାତି 'ଧଣ୍ଡାର୍ଗ୍ନ' ନାମକ ଏକ ଜାତି ନାଚ ଦୂରଦୂରାନ୍ତ ଗ୍ରାମ—ସହରକୁ ଯାଇ ନୃତ୍ୟ ପ୍ରଦର୍ଶନ କରିଥାନ୍ତି । ସଲପ ଗଛରେ ପୂଜା ଦେଇ ଏହା ବାହାରେ ଏବଂ ସେଠାରେ ସମାପ୍ତ ହୁଏ । ଏ'ନାଚରେ ନୃତ୍ୟକର୍ତ୍ତାଙ୍କ ମଥାରେ 'ଡ଼ୁଡ଼ୁମ' ନାମକ ପଗଡ଼ି ଓ ଚୁଳଥାଏ, ଶରୀରରେ ଥାଏ ରଜା ଓ ପାଇକର ପୋଷାକ । ବାଉଁଶ ବାଡ଼ିର ଅଗ ଶବ୍ଦ ହୋଇଥାଏ, ନୃତ୍ୟରତ ପରସ୍ପର ଖଣ୍ଡାଯୁଦ୍ଧ ଭଙ୍ଗିରେ ବାଡ଼ି ମରାମରି ହେଲା ବେଳେ ସମବେତ ଏକ ସୁନ୍ଦର ଧ୍ୱନି ବାହାରେ, ସେମାନେ ସୁନ୍ଦର ଲହରଯୁକ୍ତ ଗୀତ ମଧ୍ୟ ଗାଆନ୍ତି, ତା' ସାଙ୍ଗକୁ ଝମକ ବାଦ୍ୟ ବାଜୁଥାଏ । ଏଥିରେ କେବଳ ପୁରୁଷ ବ୍ୟକ୍ତି ଅଂଶଗ୍ରହଣ କରନ୍ତି, ଗ୍ରାମ ଗ୍ରାମକୁ ଯାଇ 'ଗାଁ ମିତ' ବସନ୍ତି । ଏହା ଛଡ଼ା ମାଘରେ 'ମଣ୍ଡେଇ' ଓ ବଡ଼ୁଅରେ 'ବାଲିଯାତ୍ରା' ଅନ୍ୟତମ ।

ସବୁ ପର୍ବରେ ସ୍ତ୍ରୀ ମାନଙ୍କର 'ଡେମସା' ଏବଂ ସ୍ତ୍ରୀ ପୁରୁଷଙ୍କ ମିଳିତ ସମବେତ ନୃତ୍ୟ 'ସାଇଁଲଡ଼ି' ହୋଇଥାଏ । ଏଥିରେ ଧାଡ଼ିବାନ୍ଧି ଜଣକ କାନ୍ଧରେ ଗୋଟିଏ ହାତ, କଟିଦେଶରେ ଅନ୍ୟ ହାତ ବେଷ୍ଟନ କରି ମଣ୍ଡଳାକୃତିରେ ଧାଇଁ ଧାଇଁ ନାଚନ୍ତି, ଆଗରେ ଥାଇ ନେତୃତ୍ୱ ନେଇଥିବା ନର୍ତ୍ତକ ବା ନର୍ତ୍ତକୀ ହାତରେ ମୟୂର ମୁଠାଧାରଣ କରିଥାଏ । ଏହି ମୁଖ୍ୟପର୍ବ ବ୍ୟତୀତ ସେମାନଙ୍କର ବହୁପର୍ବ-ପର୍ବାଣୀ ରହିଛି । ସେସବୁର ଗବେଷଣା ଓ ପ୍ରୋତ୍ସାହନ ପ୍ରଦାନ ଆବଶ୍ୟକ ।

[ ସୌଜନ୍ୟ ସାଃ ସମାଜ ]

ଆଦିବାସୀ ଜନଜାତିର ଅପୂର୍ବ ଘଟଣାଟିଏ - ସେଦିନ ଥିଲା ୧୯୪୨ ମସିହା ଅଗଷ୍ଟ ୨୪ ତାରିଖ । ପଞ୍ଜାବ ଜାଲିଆନାୱାଲାବାଗର ଗଣହତ୍ୟା ଅନୁରୂପ ଘଟଣା ଘଟିଥିଲା ତତ୍କାଳୀନ କୋରାପୁଟ ବା ଅଧୁନାତନ ନବରଙ୍ଗପୁର ଜିଲ୍ଲା ଟେଣିବଟୀ ପାପଡ଼ାହାଣ୍ଡି ଗ୍ରାମସ୍ଥ ତୁରି ନଈଠାରେ । ଅସଂଖ୍ୟ ଆଦିବାସୀ ଓ ହରିଜନ ସ୍ୱରାଜ ସଂଗ୍ରାମୀ ବଳିପଡ଼ିଥିଲେ ସେଦିନ ନଦୀଜଳକୁ ରକ୍ତରଞ୍ଜିତ ନିଜ ଲହୁରେ ରଙ୍ଗାୟିତ କରି । ସେ ଲୋମହର୍ଷ କାହାଣୀ ଇତିହାସ ଏବେବି ଅଲିଖିତ ଅନାଲୋଚିତ ହୋଇ ରହିଛି ।

ମହାତ୍ମା ଗାନ୍ଧିଙ୍କ ବ୍ରିଟିଶ 'ଭାରତ ଛାଡ଼' ଡାକରାରେ ସମଗ୍ର ଭାରତ ହୋଇଥାଏ ଆନ୍ଦୋଳନ ମୁଖର, ଆଇନ ଅମାନ୍ୟ ହେଉଥାଏ । ଏହି କୋରାପୁଟର ବନବାସୀ, ନବରଙ୍ଗପୁର ଅଞ୍ଚଳର ଆଦିବାସୀ ଜନତା ହଜାର ହଜାର ସଂଖ୍ୟାରେ ସ୍ୱରାଜ ସଂଗ୍ରାମରେ ସାମିଲ ହୋଇ ଧନ, ଜୀବନ ଓ ସମ୍ପତ୍ତି, ତଥା ଶିକ୍ଷା ମମତାକୁ ତ୍ୟାଗ କରୁଥାନ୍ତି । ନବରଙ୍ଗପୁର କଂଗ୍ରେସ କାର୍ଯ୍ୟାଳୟରୁ ହୁଲିଆ ଜାରି ହେଲା ସମସ୍ତ କର୍ମୀ । ନବରଙ୍ଗପୁର ତାରାଗାଁ ନିକଟସ୍ଥ ଗୁମାଗୁଡ଼ା ଗ୍ରାମରେ ଏକତ୍ରିତ ହେବେ ଏବଂ ସେଠାରୁ ପଦଯାତ୍ରୀ ଦଳ ଶୋଭାଯାତ୍ରାରେ ଯାଇ ଡାବୁଗାଁରେ ହେଉଥିବା ବିରାଟ ସାଧାରଣ ସଭାରେ ଯୋଗଦାନ କରିବେ । ଡାବୁଗାଁ ଏକ ପେଣ୍ଠ-ସ୍ଥଳ ଏବଂ ସେଠାରେ ପ୍ରତି ଗୁରୁବାର ଦିନ ଏକ ବିରାଟ ସାପ୍ତାହିକ ହାଟହୁଏ ।

୧୯୪୨ ଅଗଷ୍ଟ ୨୪ ତାରିଖ ଦିନ ପ୍ରଭାତରେ ନବରଙ୍ଗପୁର ତହସିଲ ଅଞ୍ଚଳରୁ ଶହ ଶହ କର୍ମୀ । ଆସି ଗୁମାଗୁଡ଼ାଠାରେ ଏକତ୍ରିତ ହେଲେ । ସଂଗ୍ରାମୀ ମାନଙ୍କ ହାତରେ ଶୋଭା ପାଉଥାଏ ଟାଙ୍ଗି, ଫାଙ୍ଗିଆ, ଲଠି, ତ୍ରିରଙ୍ଗ ଝଣ୍ଡା । ସରକାରଙ୍କ ଗୁପ୍ତଚର ଏହି ସମାବେଶ ପରିଦର୍ଶନ କରି ମନେକଲେ ଏମାନେ ନିଶ୍ଚିତ ଭାବେ କୌଣସି ଥାନା ଆକ୍ରମଣ କରିବେ, ଏହି ଆଶଙ୍କା ନିକଟସ୍ଥ ଥାନା ମାନଙ୍କୁ ଅବଗତ କରାଇଦେଲେ । ଫଳରେ ସମ୍ମୁଖ ଗ୍ରାମ ପାପଡ଼ାହାଣ୍ଡି ଫାଣ୍ଡି ଅଧିକାରୀ କିଛି ସଂରକ୍ଷିତ ଫୌଜ ମଗାଇ ନେଇଥିଲେ ।

ବନ୍ଦେମାତ ଦେଶ ହିତୈଷୀ ଧ୍ୱନିଦେଇ ସ୍ୱରାଜ ସଂଗ୍ରାମୀ ଶହ ଶହ ସଂଖ୍ୟାରେ ଚାଲିଥିଲେ ଶୋଭାଯାତ୍ରାରେ । କିଛି ଦୂର ପଦବ୍ରଜରେ ଯିବାପରେ ଆଗରେ ପାପଡ଼ାହାଣ୍ଡି ଗ୍ରାମ ଏବଂ ଗ୍ରାମ ସଂଲଗ୍ନ ତୁରି ନଦୀ ଉପରେ ଥିବା କାଠର ସେତୁ

ଭିତରେ ପହଞ୍ଚିଲେ ସ୍ୱରାଜ ସଂଗ୍ରାମୀଗଣ । ପୋଲ ଉପରେ ଅଛନ୍ତି ସେମାନେ, ନଈ ସେପଟ ସଡ଼କ ଉପରେ ଟ୍ରକ୍ ରଖି ଠିଆ ହୋଇଥିବା ପୋଲିସ ଦଳ ତାଙ୍କ ପଥରୋଧ କଲେ । ତେଣୁ ଓ ଜଣେ କର୍ମୀ ଟାଙ୍ଗିଆ ଉଠାଇଦେବା ଦେଖି ଆଶଙ୍କିତ ଜର୍ମାନ ସିପାହୀ ବା ମାଜିଷ୍ଟ୍ରେଟ୍ ଆଦେଶରେ ବନ୍ଧୁକ ଗୁଳିଚାଳନା ଆରମ୍ଭ କରିଦେଲେ - ।

ହଳିଆର ପଛପଟେ ଆସି ପଶ୍ଚାତରୁ ପହଞ୍ଚିବା ପୋଲିସ୍ ଦଳ କୌଣସି ଘଟଣା ଅବଗତ ନହୋଇ ମଧ୍ୟ ଅନ୍ଧନକ ବନ୍ଧୁକରୁ ଗୁଳି ଚଳାଇଲେ । ପୋଲ ବା ସେତୁର ଦୁଇପଟେ ଦ୍ରୁତବେଗରେ ପୋଲିସର ଗୁଳି ଛୁଟିଛି, ଅନ୍ୟ ଦୁଇପଟେ ଶ୍ରାବଣମାସର ବନ୍ୟାପ୍ଲାବିତ ଭରା ନଈ, ସ୍ୱରାଜଦଳ ହତସଙ୍କୁଳ, ଅନନ୍ୟୋପାୟ ହୋଇ ଅଧିକାଂଶ କର୍ମୀ ନଈର ଅତଳ ଜଳରେ ଲମ୍ଫ ଦେଲେ ··· କେତେ ଯେ କର୍ମୀ ବନ୍ୟାଜଳର ପ୍ରଖର ସ୍ରୋତରେ ଭାସିଯାଇ ପ୍ରାଣ ହରାଇଲେ ତା'ର ହିସାବ କେହି ରଖିନାହିଁ ।

ବନ୍ଧୁକ ଗୁଳିର ଶିକାର ହୋଇ ଘଟଣାସ୍ଥଳରେ ମୃତ୍ୟୁବରଣ କଲେ ବାରଜଣ ସଂଗ୍ରାମୀ ଏବଂ ରାସ୍ତାରେ ଆଣିବା ଅବସରରେ ଏବଂ ନବରଙ୍ଗପୁର ଚିକିତ୍ସାଳୟରେ ପହଞ୍ଚିବା ପରେ ମରିଗଲେ ସାତଜଣ ସଂଗ୍ରାମୀ, ମୋଟରେ ୧୯ ଜଣଙ୍କ ପ୍ରାଣ ବିସର୍ଜିତ ହୋଇଗଲା ।

'ଯୋ ପଳାୟତି ସ ଜୀବତି' ନଈ ପାରିରୁ ବାହାରି ଅଳ୍ପ କେତେଜଣ ମାତ୍ର ପଳାୟନ କରିଥିଲେ । ଶତାଧିକ ଲୋକ ଧରାହୋଇ ଉଦ୍‌ବେଗଜନକ ଆହତ ଅବସ୍ଥାରେ ହାଜତାଧୀନ ହେଲେ । ସେମାନଙ୍କ ମଧ୍ୟରୁ ପ୍ରାୟ ୬୦ ଜଣ ହାତ, ଗୋଡ଼ ହରାଇ ପଙ୍ଗୁ ହୋଇ ଯାଇଥିଲେ ଏବଂ ବହୁ କର୍ମୀଙ୍କ ନାମରେ ମକଦ୍ଦମା ହୋଇଥିଲା, ସେମାନେ କଚେରୀ ଅଦାଲତକୁ ଦଉଡ଼ି ହଇରାଣ ହୋଇ-ଥିଲେ ।

ମୃତାହତ ହୋଇଥିବା ସମସ୍ତ ସଂଗ୍ରାମୀ ଥିଲେ ହରିଜନ ଓ ଆଦିବାସୀ ଶହୀଦ ହୋଇଥିବା ୧୯ ଜଣ ଆଦିବାସୀ ଓ ହରିଜନ ହେଲେ—୧. ଭଗବାନ

ପୂଜାରୀ, ଗ୍ରାମ ମନ୍ତ୍ରୀଗୁଡ଼ା; ୨. ବନ୍ଧମ ଭତରା, ଦଳେଇଗୁଡ଼ା; ୩. ଜଗନ୍ନାଥ ଅମନାତ୍ୟ, ଦଳେଇଗୁଡ଼ା; ୪. ପରମାନନ୍ଦ ଶବର, କଙ୍କଡ଼ାଗ୍ରାମ; ୫. ଆନନ୍ଦ ଗଉଡ଼, ଦୁଃଖୁଗୁଡ଼ା; ୬. ବଳି ସଉରା, ଧଣ୍ଡରା; ୭ ରତନ ରନ୍ଧାରୀ, ଭୁରୁଞ୍ଜି; ୮ ବୁଦୁ ଅମନାତ୍ୟ ଭୁରୁଞ୍ଜି; ୯. ମଙ୍ଗୁରୁ ଭତରା, ଉମ୍ମରୀ; ୧୦. ଜଗନ୍ନାଥ ଅମନାତ୍ୟ, ପାଟପୁଟ; ୧୧. ଶୁକ୍ରୁ ମୁଦୁଲି, ମୁରୁଲିବାଇ; ୧୨. ସହଦେବ ପୂଜାରୀ, ମୁରୁଲିବାଇ; ୧୩. ସଦାଶିବ ରଣା, ମଣ୍ଡାଗାଁ; ୧୪. ରାମଚନ୍ଦ୍ର ଅମନାତ୍ୟ, ଘୁପୁଗାଁ; ୧୫. ରତନ ପୂଜାରୀ, ଉମ୍ମରୀପଦର; ୧୬. ଘାସି ଜାନି, ନୂଆଗାଁ; ୧୭. ଦୀନବନ୍ଧୁ ଜାନି, ନୂଆଁଗାଁ; ୧୮. ସୁଦୁ ଭତରା, ନନ୍ଦାହାଣ୍ଡି ଓ ୧୯ ଶ୍ୟାମସୁନ୍ଦର ଗଉଡ଼, ସବୁଗୁଡ଼ା । (ଏ ସମସ୍ତ ପଲ୍ଲୀଗ୍ରାମର ଆଦିବାସୀ) ।

ପରବର୍ତ୍ତୀ କାଳରେ ନବରଙ୍ଗପୁର କଂଗ୍ରେସ କାର୍ଯ୍ୟାଳୟ ଠାରେ ଏହି ବଳିଦାନ ଦେଇଥିବା ବ୍ୟକ୍ତି ତଥା ବନ୍ଦୀଶାଳାରେ ଜୀବନ ଦେଇଥିବା ସହିଦ ମାନଙ୍କର ନାମ, ଧାମ ଲେଖି ଟିଣପଟାର ନାମଫଳକ ମାନ ଟଙ୍ଗା ଯାଇଥିଲା ସ୍ମୃତିରକ୍ଷା ସକାଶେ । ଦେଶ ସ୍ୱାଧୀନ ହେବା ପରେ ଏହି ଅଞ୍ଚଳବାସୀ ପକ୍ଷରୁ ରାଜ୍ୟ ସରକାରଙ୍କ ନିକଟରେ ପାପଡ଼ାହାଣ୍ଡି ଠାକୁରାଣୀଙ୍କ କୂଳରେ ଅକଳ୍ପିତ ଗୁଳି କାଣ୍ଡରେ ଜୀବନଦାନ କରିଥିବା ସହିଦଙ୍କ ସ୍ମୃତିରକ୍ଷା ପାଇଁ କିଛି ବ୍ୟବସ୍ଥା କରିବା ଦାବି କରାଗଲା । ସରକାର ଓ ନେତୃମଣ୍ଡଳୀଙ୍କ ପରାମର୍ଶକ୍ରମେ ମୃତମାନଙ୍କୁ ଶାୟିତ କରାଯାଇଥିବା ଭୂମିଶଯ୍ୟାସ୍ଥଳରେ ଏକ ସ୍ମୃତିସ୍ତମ୍ଭ ନିର୍ମାଣ କରିବା ସ୍ଥିର କରାଗଲା ।

ତା ୩୦ ଜାନୁଆରୀ ୧୯୮୧ ମସିହାରେ ସେହି ପବିତ୍ର ଠାକୁରାଣୀ ଘାଟର ରକ୍ତମଖା ପୁଣ୍ୟଭୂମିରେ ମୀନାର ସ୍ତମ୍ଭ ନିର୍ମାଣ ଜନିତ ଭୂମିପୂଜା ହେଲା । କୋରାପୁଟ ଜିଲ୍ଲାକୁ ପ୍ରଥମେ ଗାନ୍ଧି ବାର୍ତ୍ତା ଆଣି କଂଗ୍ରେସ ଗଠନ କରିଥିବା ଏବଂ ସ୍ଥାନୀୟ ବାସିନ୍ଦାଙ୍କ ଦ୍ୱାରା 'କୋରାପୁଟିଆ ଗାନ୍ଧି' ଭୂଷିତ ହୋଇଥିବା ୰ ରାଧାକୃଷ୍ଣ ବିଶ୍ୱାସରାୟ ସେହିଦିନ ସେଠି ନିଜ ହସ୍ତରେ ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ ।

ଏହାର ତିନିବର୍ଷ ଉତ୍ତାରୁ ସହିଦ ମୀନାର ନିର୍ମାଣ ହୋଇ ତା ୨୩-୫-୧୯୮୪ର ଶୁଭ ମୁହୂର୍ତ୍ତରେ ତତ୍କାଳୀନ ଓଡ଼ିଶାର ରାଜ୍ୟପାଳ ଶ୍ରୀ ବିଶ୍ୱମ୍ଭର ନାଥ ପାଣ୍ଡେ ସହିଦ ମୀନାର ଉଦ୍‌ଘାଟନ କଲେ । ପରବର୍ତ୍ତୀ କିଛିବର୍ଷ ପରେ ପ୍ରତିବର୍ଷ ଅଗଷ୍ଟ ୨୪ ତାରିଖ ଦିନ ସେଠାରେ ସହିଦ ସ୍ମୃତି ଦିବସ ପାଳନ କରିବା ପାଇଁ ରାଜ୍ୟ ସରକାର ଏକହଜାର ଟଙ୍କା ମଞ୍ଜୁର କରିଛନ୍ତି । ସେହିଦିନ ସେଠାରେ କେତେ

ଜଣ ରାଜନେତା ଓ ସରକାରୀ କର୍ମଚାରୀ ମିଳିତ ହୋଇ ସ୍ମୃତିସଭା କରନ୍ତି । ସାଧାରଣ ଜନତାଙ୍କୁ ସେଥିରେ ସାମିଲ କରି ସହିଦ ସ୍ମୃତିକୁ ପ୍ରେରଣାପ୍ରଦ କରିବା ପାଇଁ ବିଶେଷ ପ୍ରକାଶ ପାଉଛି ।

ସ୍ତମ୍ଭ ଉପରେ ଅଛି ଏ'ସ୍ତମ୍ଭ ସତ୍ୟ କିନ୍ତୁ ଯେଉଁଠି ଅଛି ନିକଟରେ ଅବସ୍ଥିତ ଭୂଇଁ, ସେଠିକି କେହି କେବେ ଯିବାର ଆବଶ୍ୟକତା ଅନୁଭବ କରନ୍ତି ନାହିଁ; କାରଣ ଏହା ମୂଳଗ୍ରାମଠାରୁ ପ୍ରାୟ ଏକ କିଲୋମିଟର ଦୂରରେ ଅବସ୍ଥିତ । ଏଣୁ ପାପଡ଼ାହାଣ୍ଡି ଗ୍ରାମବାସୀ ପାପଡ଼ାହାଣ୍ଡିର ଐତିହାସିକ ଶୈବକ୍ଷେତ୍ର ମଲ୍ଲ-କଣ୍ଠେଶ୍ୱର ମନ୍ଦିରଠାରୁ ସହିଦ ସ୍ତମ୍ଭ ପର୍ଯ୍ୟନ୍ତ ପକ୍କା ସଡ଼କ ନିର୍ମାଣ କରିବା, ସ୍ତମ୍ଭ ଚତୁଃପାର୍ଶ୍ୱେ ପୁଷ୍ପ ଉଦ୍ୟାନ ତଥା ସିମେଣ୍ଟ ବେଞ୍ଚ ନିର୍ମାଣ ଏବଂ ସ୍ମୃତିସ୍ତମ୍ଭ ନିକଟରେ ପଠନ ବ୍ୟବସ୍ଥା ସହ ଏକ ପାଠାଗାର ସ୍ଥାପନ କରି ସେଠାରେ କର୍ମ-ଚାରୀ ନିଯୁକ୍ତ କରିବା ସକାଶେ ରାଜ୍ୟ ସରକାରଠାରେ ବହୁଦିନ ହେଲା ଦାବି କରି ଆସୁଛନ୍ତି; କିନ୍ତୁ ତାହା ଆଜି ପର୍ଯ୍ୟନ୍ତ ପୂରଣ ହୋଇପାରି ନାହିଁ ।

ଏହି ମହତ୍ତ୍ୱ ପ୍ରସ୍ତାବ ତୁରନ୍ତ କାର୍ଯ୍ୟକାରୀ ହେବା ଉଚିତ୍ । ସହିଦ ସ୍ମୃତି ପୀଠ ଜାତୀୟ ତୀର୍ଥ ଭାବେ ପରିଗଣିତ ହୋଇ ଜନତାର ଶ୍ରଦ୍ଧାସୁମନ ଅର୍ପିତ ହେଲେ ଆଗାମୀ ପିଢ଼ି ଅନୁପ୍ରାଣିତ ହେବେ । ( ସୌଜନ୍ୟ ସା: ସମ୍ବାଦ ) ।



ଅବିଭକ୍ତ କୋରାପୁଟ ଜିଲ୍ଲାର ନବରଙ୍ଗପୁର ସବଡ଼ିଭିଜନ ବା ଆଧୁନିକ ନବରଙ୍ଗପୁର ଜିଲ୍ଲାର ଏକ ସୁଖ୍ୟାତ ଲୋକ ନୃତ୍ୟର ନାମ 'ଧଣ୍ଡାରୀ' । ଅଶିକ୍ଷିତ ଓ ଅନୁନ୍ନତ ସରଳ ଗ୍ରାମ୍ୟ କଳାକାରଙ୍କ ଦ୍ୱାରା ଏହା ଅଭିନୀତ ବା ପରିବେଷିତ ହେଉଥିଲେ ହେଁ ଏଥିରେ କଳା ନୈପୁଣ୍ୟ ଅତ୍ୟନ୍ତ ମନ ମୁଗ୍ଧକର ଏବଂ ହୃଦ୍ୟ । ଲୋକ-ବିଶ୍ୱାସ ରହିଛି ଶ୍ରୀକୃଷ୍ଣ ତାଙ୍କ ସମକାଳୀନ ଗଉଡ଼ ସଖାମାନଙ୍କ ସହ ଦଣ୍ଡ ବା ବାଡ଼ିଧରି ଗୋରୁଚରା କରୁଥିଲେ, ଶତ୍ରୁ ତଥା ହିଂସ୍ର ଜନ୍ତୁ ମାନଙ୍କୁ ବାଡ଼ିଦ୍ୱାରା ଆକ୍ରମଣ କରୁଥିଲେ; ଏହି ଲଉଡ଼ି ବା ବାଡ଼ି ଥିଲା ସେମାନଙ୍କର ନିତ୍ୟ ସହଚର, ତେଣୁ ଅବସର ସମୟରେ କୌତୁକ ପରବଶ ହୋଇ ସେହି ବାଡ଼ି ଖେଳ ଖେଳୁଥିଲେ । ବାଡ଼ି ବା ଦଣ୍ଡ ଉପରେ ଦଣ୍ଡ ଘର୍ଷଣ କରି ଏ ଖେଳ ହେଉଥିବାରୁ

ହୁଏତ ଏ' ନୃତ୍ୟ ବା ନାଚର ନାମ ଧଣ୍ଡାଗ ହୋଇଛି ।

ଏଣୁ 'ଧଣ୍ଡାଗ' ଶବ୍ଦ 'ଦଣ୍ଡାର' ଶବ୍ଦଜ ବୋଲି ଅନୁମାନ କରାଯାଏ । 'ଦଣ୍ଡ' ଏବଂ 'ଅରି' (ଅର୍ଥାତ୍ ବାଡ଼ିଦ୍ୱାରା ଶତ୍ରୁ ଦମନ) ଏହି ଦୁଇ ଶବ୍ଦରୁ ମିଶ୍ରଣ ହୋଇ କଥିତ ଭାଷାରେ ଧଣ୍ଡାଗ ହୋଇଛି । କାଳକ୍ରମେ ଦଣ୍ଡର 'ଦ' ଅକ୍ଷର ଅପଭ୍ରଂଶ ହୋଇ 'ଧ' ହୋଇଛି ।

ପୁନଶ୍ଚ ଏହି ନୃତ୍ୟର ଆଙ୍ଗିକ ପରିପାଟି ଦେଖିଲେ ଏହା ଏକ ଯୁଦ୍ଧ ନୃତ୍ୟ ବା ସମରଭଙ୍ଗୀମୂଳ ବୋଲି ମନେହୁଏ ।

ପ୍ରତି ନୃତ୍ୟ ଦଳରେ ବାରରୁ ଶହେ ପର୍ଯ୍ୟନ୍ତ କଳାକାର ଭାଗ ନେଇ-ଥାନ୍ତି । ଏ'ସମସ୍ତେ ପୁରୁଷ ବ୍ୟକ୍ତି । ସେମାନେ କଟି ଦେଶରେ ଧାଇକଚ୍ଛା ପରିଧାନ କରିଥାନ୍ତି । ଦେହର ରଙ୍ଗିନ୍ ରାଜ ପରିଚ୍ଛଦ ବା 'ରୟାଲ୍ କୋଟ୍'ରେ ଆବୃତ ହୋଇଥାଏ । ମଥାରେ ଥାଏ ରଙ୍ଗିନ ଶିରପା ବା ପଗଡ଼ି । ସେଥିରେ ଏକ ପ୍ରକାର ଚୂଳ ଲାଗିଥାଏ । ଏହାକୁ 'ଦୁର୍ଦ୍ଦୁମ' କୁହାଯାଏ । ପ୍ରତ୍ୟେକ ନୃତ୍ୟଶିଳ୍ପୀ ଦୁଇ ହାତରେ ସରୁ ବାଉଁଶର ଦୁଇଟି ବାଡ଼ିଧରିଥାନ୍ତି, ଏହାର ଅଗ୍ରଭାଗ ଚତୁର୍ଦ୍ଧା ବଉଳ ବା ଗୁରଫଡ଼ା ହୋଇଥାଏ ।

ନୃତ୍ୟଶିଳ୍ପୀମାନଙ୍କ ପୋଷାକ, ଅନ୍ୟାନ୍ୟ ଉପକରଣ ଓ ନୃତ୍ୟ ଭଙ୍ଗୀ ଦେଖିଲେ ଏହା ଓଡ଼ିଆ ପାଇକମାନଙ୍କ ରଣଭଙ୍ଗୀ ବା ସମର-ଦୃଶ୍ୟ କଥା ମନେ ପକାଇ ଥାଏ ।

ନବରଙ୍ଗପୁର ସଦର ନିକଟସ୍ଥ ନୂଆଁଗଡ଼, ବୋରିଗୁମା ବ୍ଲକର ଭୈରବ ସିଂହପୁର ଓ ନବରଙ୍ଗପୁର ଜିଲ୍ଲା ଡାବୁଗାଁ ଆଦି ଅଞ୍ଚଳରେ ଏହି ନୃତ୍ୟର ପ୍ରଚଳନ ସର୍ବାଧିକ । ନର୍ତ୍ତକଗଣ 'ଭତରା' ଓ 'ଅମନାତ୍ୟ' (ଅମାତ୍ୟ) ଜାତିର ଲୋକ । ଏ'ମାନେ ସରକାରୀ ତାଲିକାର ଆଦିବାସୀ ଶ୍ରେଣୀ ଅନ୍ତର୍ଭୁକ୍ତ ଭତରା ପାଇକ ମାନଙ୍କ ଉପଜାତି ଏବଂ ଅମନାତ୍ୟ ଅମାତ୍ୟ ପଦବୀର ଅପଭ୍ରଂଶ ବୋଲି ମନେହୁଏ । ତେଣୁ ପାଇକ ଓ ଅମନାତ୍ୟମାନଙ୍କ ଜାତୀୟ

ନୃତ୍ୟ ହୋଇଥିବାରୁ ଏହାକୁ ଓଡ଼ିଶୀ ପାଇକ ନୃତ କହିଲେ ଅତ୍ୟୁକ୍ତି ହେବନାହିଁ ।

ଏହି ନୃତ୍ୟ ହେବା ସମୟରେ ଖାଲି ବାଦ୍ୟ ବାଜେ । କଳାକାରମାନେ ହାତରେ ଧରିଥିବା ଦଣ୍ଡକୁ ପରସ୍ପର ବାଡ଼େଇ ନୃତ୍ୟ ପ୍ରଦର୍ଶନ କରିଥାନ୍ତି । ଫଣ୍ଡା ବା ଫାଳ ବାଉଁଶ ଆଘାତ ପାଇଲେ ସେଥିରୁ 'ଠ'···'ଠଅ' ··ଶବ୍ଦ ସୃଷ୍ଟି ହୁଏ । ନୃତ୍ୟକାରୀଗଣ ନିଜ ପାଟିରୁ ଏହି ସମୟରେ 'ଓହ୍···' ଭଳି ଏକ ହୁଙ୍କାର ଶବ୍ଦ ଉଚ୍ଚାରଣ କରିଥାନ୍ତି ।

ସେମାନେ କେତେବେଳେ ଧାଡ଼ିବାନ୍ଧି ନୃତ୍ୟ କରନ୍ତି ତ କେତେବେଳେ ଗୋଲକାର ହୋଇ ନାଚନ୍ତି । ପୁଣି କେତେବେଳେ ଜଣକ କାନ୍ଧରେ ଦଣ୍ଡାୟମାନ ହୋଇ ନୃତରତ ରହନ୍ତି, ପରବର୍ତ୍ତୀ ସମୟରେ ଜଣକ ଉପରେ ଠିଆହୋଇ ଗମ୍ବୁଜ ବା ପିରାମିଡ଼ ନିର୍ମାଣ କଲାଭଳି ବ୍ୟୁହ କରି ନାଚନ୍ତି । ପୁନଶ୍ଚ କେତେକ ସମୟରେ ଜଣକ ପଛରେ ଜଣେ ଲୁଚିଗଲାଭଳି ଅଭିନୟ କରି କଳା କୌଶଳ୍ୟ ପ୍ରଦର୍ଶନ କରନ୍ତି । ଏହି ନୃତ୍ୟ ବେଶ୍ ମନମୁଗ୍ଧକର ଓ କୌତୁକପ୍ରଦ ।

ପ୍ରତିବର୍ଷ ପୌଷ ପୂର୍ଣ୍ଣିମାରେ ପ୍ରାୟତଃ ଏହି ନୃତ୍ୟ ଆରମ୍ଭ ହୁଏ । ନୃତ୍ୟଦଳ ଗାଁ ଗାଁ ବୁଲି ବୁଲି ନାଚ ଦେଖାନ୍ତି । ପ୍ରତିବର୍ଷ କୌଣସି ନା କୌଣସି ଗ୍ରାମରେ ମୈତ୍ରୀ ସମ୍ପର୍କ ସ୍ଥାପନ କରିବା ବା ମିତ ବସିବାର ଦେଖାଯାଏ । ଏହି ଗାଁ ମଇତ ହେଲେ ନୃତ୍ୟଦଳର ଗ୍ରାମୀଣ ସମସ୍ତେ ମିତ ବା ଗାଁ ଗୋଠାକର ଲୋକେ ସଙ୍ଗାତ ହୋଇଯାଆନ୍ତି । ନୃତ୍ୟକାରୀଙ୍କ ଗ୍ରାମ ତଥା ମିତ ଗ୍ରାମର ଲୋକଙ୍କ ଭିତରେ ଉତ୍ତମ ସମ୍ପର୍କ ସ୍ଥାପିତ ହୁଏ । ଘର ବେଭାର ଦେବାନେବା ହୁଏ । ଭେଟି ଘାଟରେ ପରସ୍ପରକୁ ଆପ୍ୟାୟିତ କରନ୍ତି ।

ପୌଷ ପୂର୍ଣ୍ଣିମା ବେଳକୁ ନୃତ୍ୟଦଳ ଭ୍ରମଣରେ ବାହାରନ୍ତି, କାରଣ ପୂର୍ଣ୍ଣିମାରେ ରାଜା, ମହାରାଜାଙ୍କ ଅଭିଷେକ ଉତ୍ସବ ହେଉଥିଲା, ରାଜ ଦରବାରର କଳାକାରଙ୍କୁ ସେତେବେଳେ ପାରିତୋଷିକ ହେଉଥିଲେ । ମାଘ ମାସରେ ସେମାନେ ଭ୍ରମଣରେ ବାହାରି ପ୍ରାୟ ଦେଢ଼ ମାସ କାଳ ପ୍ରବାସରେ ରହିବା ପରେ ନିଜ ଗ୍ରାମକୁ ଫେରିବା କ୍ଷଣି ଗାଁ ସୀମାନ୍ତରେ ଏକ ସିମୂଳି କମ୍ବା ମହୁଲ ଗଛରେ ଗ୍ରାମ ଦେବୀଙ୍କ ପୂଜା କରନ୍ତି ଏବଂ ସେହି ଗଛର ଉପରି ଭାଗ ଶାଖା ଡାଳରେ ବାଡ଼ି

ଗୃହକୁ ଯାଇତ ରହନ୍ତି । ଗ୍ରାମରେ ଭୋଜ କରି ଖାଆନ୍ତି । ସ୍ତ୍ରୀ ଲୋକମାନେ ଧଣ୍ଡା-ଶଅମାନଙ୍କୁ ବନ୍ଦାପନା କରନ୍ତି । ଏ'ସବୁ ଉତ୍ସବର ପରେ ନିଜ ନିଜ ଗୃହକୁ ସେମାନେ ପ୍ରତ୍ୟାବର୍ତ୍ତନ କରନ୍ତି । ପୁଣି ଆଗାମୀ ବର୍ଷର ପୌଷ ପୂର୍ଣ୍ଣିମାବେଳେ ନୃତ୍ୟାରମ୍ଭ ଓ ଗଣଭୋଜ ପରେ ନୃତ୍ୟ ପରିବେଷଣ ପରିକ୍ରମାରେ ବାହାରନ୍ତି ।

ଦୁଃଖ ଓ ଚିନ୍ତାପର ବିଷୟ ଯେ, ପ୍ରୋତ୍ସାହନ ଅଭାବରୁ ଏହି ଲୋକ ନୃତ୍ୟ ସମ୍ପ୍ରତି ଲୁପ୍ତ ହେବାକୁ ବସିଛି । ପୂର୍ବେ ରାଜା, ମହାରାଜାମାନେ ଏହି ନୃତ୍ୟ ଶିଳ୍ପୀ ମାନଙ୍କୁ ସ୍ଥାୟୀଭାବେ ଜମିବାଡ଼ି ଦେଇ ଅନ୍ନ ସଂସ୍ଥାନର ବ୍ୟବସ୍ଥା କରୁଥିଲେ, ପୌଷାଭିଷେକ କାଳରେ ଧନ ରତ୍ନ ଦେଇ ପୁରସ୍କୃତ କରୁଥିଲେ, ସଂପ୍ରତି ସେ ସବୁ ତ ଦୂରର, କଥା କୌଣସି ସରକାରୀ ନୋଥିପତ୍ରରେ ଏ' ନାଚର ନାମଥିବା ମଧ୍ୟ ଦୃଷ୍ଟିଗୋଚର ହୁଏନାହିଁ । ଏ' ଲୋକନୃତ୍ୟକୁ ଉତ୍ସାହିତ ନକଲେ କାଳ ଗର୍ଭରେ ଏହା ଦିନେ ଲୁଚିପିବ । ତେଣୁ ଶିକ୍ଷିତ ଗବେଷକଗଣ ଏହା ହଜିପିବା ପୂର୍ବରୁ ଏହାର ପୁନରୁଦ୍ଧାର କରିବା ଏବଂ ସରକାରୀ ସହାୟତା ମିଳିବା ଏକାନ୍ତ ପ୍ରୟୋଜନ । (ସୌଜନ୍ୟ—'ସୁଲେଖା', ପୁରୀ)



ଅବିଭକ୍ତ କୋରାପୁଟ ଜିଲ୍ଲାର ଘଞ୍ଚ ବନାନୀ ଓ ସବୁଜ ପାହାଡ଼ିଆ ଅଞ୍ଚଳରେ ରହୁଥିବା, ବିଶେଷକରି ସାମ୍ପ୍ରତିକ କୋରାପୁଟ ଓ ନବରଙ୍ଗପୁର ଜିଲ୍ଲାରେ ରହୁଥିବା ଆଦିବାସୀମାନଙ୍କର ବାଲିଯାତ୍ରା ଏବଂ ମଣ୍ଡେଇ ଯାତ୍ରା ନାମରେ ଦୁଇଟି ସ୍ୱତନ୍ତ୍ର ପର୍ବୋତ୍ସବ ହୋଇଥାଏ, ଯାହାକି ପ୍ରାୟତଃ ଅନ୍ୟଅଞ୍ଚଳରେ ବିଶେଷ ପ୍ରଚଳିତ ନୁହେଁ ।

ବାଲିଯାତ୍ରା କହିଲେ ସାଧାରଣେ କଟକର ଗଡ଼ଗଡ଼ିଆଘାଟରେ କାର୍ତ୍ତିକ ପୂର୍ଣ୍ଣିମା ଦିନ ହେଉଥିବା 'ବୋଇତ ଭସାଣି ଉତ୍ସବ' ସହିତ ପରିଚିତ । ଓଡ଼ିଆ ପୁଅ ସାଧବମାନେ ଯାଭା; ସୁମିତ୍ରା ପ୍ରଭୃତି ଦ୍ୱୀପକୁ ଯାଇ ବାଣିଜ୍ୟକରି ଧନରତ୍ନ ଆଣୁଥିଲେ, ବିଶେଷ ଭାବେ 'ବାଲି' ଦ୍ୱୀପକୁ କାର୍ତ୍ତିକ ପୂର୍ଣ୍ଣିମା ଦିନ ଅନୁକୂଳ କରି ବାହାରୁଥିଲେ ବୋଇତ ଯୋଗେ । ତା'ର ସ୍ମୃତିରକ୍ଷା ସକାଶେ ସେହି ବାଲିଯାତ୍ରା ଅନୁଷ୍ଠିତ ହୁଏ । ବନବାସୀଙ୍କ 'ବାଲିଯାତ୍ରା'ର ଅର୍ଥ ଓ ଉଦ୍ଦେଶ୍ୟ କିନ୍ତୁ ସମ୍ପୂର୍ଣ୍ଣ ଭିନ୍ନ ।

ଆଦିବାସୀଙ୍କ ବାଲିମାନ ତିନୋଟି କାଳ ଅବଧିରେ ହୋଇଥାଏ— ଭଦ ବାଲି, ତିନିବରଷିଆ ବାଲି ଓ ବାର ବର୍ଷିଆ ବାଲି । ତିନିଟିଯାକର ବିଧିବିଧାନ, ଉପଚାର ଓ ଉତ୍ସବ ପ୍ରକରଣ ପ୍ରାୟ ଏକ ପ୍ରକାର ହେଲେ ମଧ୍ୟ ସମୟର ବ୍ୟବଧାନ ଭିନ୍ନ ପ୍ରକାର । ବଡ଼ ସହର, ବଡ଼ ଗ୍ରାମରେ ପ୍ରତିବର୍ଷ 'ଭଦବ ଲି' ହୁଏ ଭାଦ୍ରବ ରେ ଏହା ଅନୁଷ୍ଠିତ ହେଉଥିବା ଯୋଗୁଁ ଏପରି ଏହାର ନାମକରଣ କରାଯାଇଛି । ଏହି ବାର୍ଷିକ ଭଦବାଲି ସାଧାରଣତଃ ଦେବୀ ମନ୍ଦିରମାନଙ୍କରେ ହୋଇଥାଏ । ନବରଙ୍ଗପୁର ମାଁ ଭଣ୍ଡାର ଘରଣୀ ମନ୍ଦିରରେ ଦଶନ୍ଧି ବ୍ୟାପୀ ରାଜ ଅମଳରେ ଏହି ଯାତ୍ରା ପ୍ରସିଦ୍ଧି ଲାଭ କରିଥିଲା ତଥା ଏକ ବିରାଟ ମହୋତ୍ସବ ହେଉଥିଲା, ମଠ ମନ୍ଦିର ସବୁ ଦେବୋତ୍ତର ବିଭାଗ ଅଧୀନକୁ ଗଲାପରେ ସମ୍ପୂର୍ଣ୍ଣ ଲୋପ ପାଇଛି ।

ଏହି ଭଦବାଲି ପାଇଁ ଏକ ସ୍ୱତନ୍ତ୍ର ଗୃହ ରହିଥାଏ । ଭାଦ୍ରବ ମାସ ଶୁକ୍ଳ ପକ୍ଷ ଦଶମୀ ତିଥିରେ ଆଦିବାସୀ ମହିଳା ପୂଜାରଣୀ ଓ ପୂଜକମାନେ ବାଦ୍ୟବାଜଣା ସହ ନିକଟସ୍ଥ ନଦୀକୂଳକୁ ଯାଇ ବାଲି ଧୋଇ ଆଣନ୍ତି ଏବଂ ବାଲିଘରେ ରଖନ୍ତି । ତାହାପରେ ଘଣ୍ଟ, ବାଦ୍ୟ, ଅଲଟଗୁମର, ଦୁର୍ଗାଦେବୀ ପାଟଖଣ୍ଡା ଓ ଛତ ଧରି ଘରଘର ବୁଲି ବିହନ ସଂଗ୍ରହ କରିଥାନ୍ତି । ପ୍ରତିଗୃହ ଅଗଣାରେ ଲିପାପୋଛା କରି ଝୋଟିଦେଇ, ପୂଜା ସାମଗ୍ରୀ ସହ ଗୃହସ୍ଥମାନେ ବନ୍ଦାପନା କରନ୍ତି ଏବଂ ଧାନ, ଗୁଜିଳ, ବରି, ମୁଗ, ଗହମ, ମକା, ବୁଟଚଣା ଇତ୍ୟାଦି ଦିଅନ୍ତି, ପୂଜାରଣୀ ତାକୁ ଏକ ନୂଆ ବାଉଁଶ ଧଳଣମଣା ଗୁଙ୍ଗୁଡ଼ିରେ ନେଇ ବାଲିଘରେ ସାଇତି ରଖନ୍ତି ।

ଏକାଦଶୀ ଦିନ ଅଧିବାସ ଏବଂ ତହିଁ ପରେ ଆରମ୍ଭ ହୁଏ ଦ୍ୱାଦଶୀ ଦିନ । ବାଲି ଘରେ ଦୁଇଟି କକ୍ଷଥାଏ, ଗୋଟିଏ ଗର୍ଭକକ୍ଷ, ସେହିଘରେ ବାଲି ବିଛାଇ ବିହନ ଜଳରେ ଜର୍ଜରିତ କରାଯାଇ ଥାଏ, ଏବଂ ବିଭିନ୍ନ ଦେବ, ଦେବୀଙ୍କ ନାମରେ ଗୋଟିଏ ଗୋଟିଏ ଛୋଟ ବାଉଁଶ ଟୁଙ୍ଗୁଡ଼ାରେ ବାଲି ଭର୍ତ୍ତି କରାଯାଇଥାଏ । ଏହି ଘର ଅଭ୍ୟନ୍ତରକୁ ସର୍ବସାଧାରଣଙ୍କ ପ୍ରବେଶ ନିଷେଧ; କେବଳ ପୂଜାରୀଣୀମାନେ ଯାଆନ୍ତି । ଅନ୍ୟ କକ୍ଷରେ ନିଗେଳା ଜଳ ଦେଇ ବାଲି ସିକ୍ତ ରହିଥାଏ । ଦ୍ୱାଦଶୀ ଦିନ 'ଦିଶାରୀ' ନାମକ ଜ୍ୟୋତିଷ ଦେଇଥିବା ଶୁଭ ମୁହୂର୍ତ୍ତରେ ବିହନ ବା ବୀଜ ବପନ କରାଯାଏ । ଏହି କକ୍ଷକୁ ସର୍ବସାଧାରଣ ଯାଇ ଦର୍ଶନ କରନ୍ତି ।

ସବୁକ୍ଷେତ୍ରରେ ସେଠି ପୂଜାରଣୀମାନେ ଜଗି ରହିଥାନ୍ତି । 'ଗୁରୁମାଇଁ' ନାମକ ଆଦିବାସୀଙ୍କ ମହିଳା ପୁରୋହିତ ପୂଜା ପରିଚାଳନ କରେ, ଏହି ଗୁରୁମାଇଁଙ୍କ

ସଙ୍ଖ୍ୟା ଏକାଧିକ ହୋଇଥାଏ । ଧୂପ, ଦୀପ, ଫୁଲ, ମୁଆଁ, ଗୁଡ଼ଚଣା ପ୍ରତିନିତ୍ୟ ଦୁଇବେଳା ପୂଜାହୁଏ । ପୂଜା ସରିବା ପରେ ଏକ ସଙ୍ଗୀତାଶ୍ରୟୀ ଗୀତମାନ ଜଣେ କି ଦୁଇଜଣ ମହିଳା ଧୀରସ୍ୱରରେ ଗାୟନ କରନ୍ତି । ଏହା ଗାଇବା ସମୟରେ ଏକ ସ୍ୱତନ୍ତ୍ର ବାଦ୍ୟଯନ୍ତ୍ର ବ୍ୟବହୃତ ହୋଇଥାଏ । ଗୋଟିଏ ପଟେ ମାଟି ହାଣ୍ଡି ଏବଂ ଅନ୍ୟ ପଟେ ବାଉଁଶ କୁଲା (ଦୁଇଳ ବାଛୁଚା ପାତ୍ର) ରହିଥାଏ, କୁଲା ଓ ହାଣ୍ଡିର ମଧ୍ୟ ଭାଗରେ ଛିଦ୍ରକରି ବାଉଁଶ ଶିରର ତାର ଭଳି ସୂତା ଟେକୋଟି ସଂଯୋଜିତ ହୋଇଥାଏ, ପୂଜାରିଣୀମାନେ ହାଣ୍ଡି ନିକଟରେ ଗୋଟିଏ ଛୋଟ ଟୁଲ ଭଳଥିବା ମଞ୍ଚା ଚଉକିରେ ବସି; ହାତରେ ସେହି କୁଲକୁ ଧରି ଅନ୍ୟ ହସ୍ତ ଅଙ୍ଗୁଳି ଦ୍ୱାରା ବାଉଁଶ ତାର ବଜାଇ ଏକ ଅଦ୍ଭୁତ ଓ ମଧୁର ସ୍ୱରବାଦନ କରନ୍ତି । ଏହି ବାଦ୍ୟବାଜଣା ବଜାଇ ସ୍ତୋତ୍ର ଗୀତମାନ ଆଦିବାସୀ ଭାଷାରେ ଗାୟନ କରନ୍ତି ।

ବାଲିଜିର ସାମନାରେ ଢାଲପଡ଼ର ଘୁମୁଣ୍ଡିଆ ହୋଇଥାଏ । ପ୍ରତିଦିନ ସନ୍ଧ୍ୟାରେ ଏହି ଗୁରୁମାଇଁମାନଙ୍କୁ କାଳିସୀ ଲାଗେ, ସେଇମାନେ ମନ୍ତ୍ରବଳ ମୁକୁଳାକରି ନାଚନ୍ତି ବାଦ୍ୟର ତାଳେ ତାଳେ । ରାତିରେ ଘୁମୁରାପାଲା ନାଚ, ଝାମକ ନାଚ ଓ ଅନ୍ୟାନ୍ୟ ନୃତ୍ୟଗୀତ ହୋଇଥାଏ । ନବଦିନ ବ୍ୟାପୀ ଏହି ଉତ୍ସବ ଚାଲେ । କିଛି ବର୍ଷ ପୂର୍ବେ ନବରଙ୍ଗପୁର ମାଁ ଭଣ୍ଡାର ଘରଣୀ ମନ୍ଦିରରେ ଏହି ବାଲିଯାତ୍ରା ଏକ ବଡ଼ ଉତ୍ସବ ଭାବେ ପରିଣତ ହେଉଥିଲା, ଆଦିବାସୀ ସହ ଅଣ-ଆଦିବାସୀ ମିଶି ସାହି ସାହିରୁ ଘୁମୁରାପାଲବାଲା ଦଳ ଦଳ ହୋଇ ବାଦ୍ୟ ବାଜଣା ସହ ପ୍ରତିରାତି ଶୋଭାଯାତ୍ରା କରି ଯାଉଥିଲେ । ବାଲିଗୃହଠାରେ ସେହି ଘୁମୁରାନାଚର ବାଦାବାଦି ହେଉଥିଲା, ଝଟତ ଗୀତ ରଚନା ଓ ଗାୟନକରି ବାଦାନୁବାଦ ପ୍ରତିଯୋଗୀତା ହେଉଥିଲା । ନର୍ତ୍ତକମାନେ ବିଭିନ୍ନ ବେଶ ପୋଷାକ, ମଥାରେ ଟୋପି ଓ ଚୂଳ ଏବଂ ଅଣ୍ଟାରେ ଥିବା ଝମକ ଓ ଘୁମୁରାବାଦନ କରୁଥିଲେ । ପୃଷ୍ଠପୋଷକ ଅଭାବରୁ ଏବେ ତାହା ଲୁପ୍ତ ହୋଇଯାଉଛି ।

ବିହନ ବୁଣିବାର ନବମ ଦିନ ମୁଖ୍ୟଯାତ୍ରା ହୁଏ । ବାଲି କଅଁଳ ଓ ବାଉଁଶ 'କୁଞ୍ଚା' (ଛୋଟ ଟୋକେଇ)ରେ ପ୍ରତ୍ୟେକ ଶସ୍ୟର ବଡ଼ବଡ଼ ଗଛ ହୋଇଥାଏ । କେଉଁ ବୃକ୍ଷ କେତେ ଉଚ୍ଚରେ ବଢ଼ି ଗଛ କପରି ପଲ୍ଲବିତ ହୋଇଛି ସେଥିରୁ ସେ ବର୍ଷର ଫସଲ ହେବାକଥା ଜଣାଯାଏ । ଦେବୀ ଦେବତା ତୃପ୍ତ କି ନୁହନ୍ତି ଦିଶାଯାଇ ବୁଝେ । ସେ ଦିନ ବହୁ ସଂଖ୍ୟକ ଆବାଳ ବୃଦ୍ଧ ବିଭିନ୍ନ ବେଶ ହୋଇ ଯାତ୍ରାକୁ ଆସନ୍ତି, ବିଭିନ୍ନ ଫାର୍ଶ ବାହାରେ ।

ଚୈତ୍ରରେ ହୁଏ ବାଲିଯାତ୍ରା, ସକାଳୁ ଛତ ପାଟଘଣ୍ଟା ସହ ପଟୁଆର ଘର ଘର ବୁଲି ବାଲିଫୁଲ (ଶଙ୍ଖପୁଷ୍ପ) ବଣ୍ଟନ ହୁଏ । ମନ୍ଦିରମାନଙ୍କରେ ପ୍ରତ୍ୟେକ ଦର୍ଶକଙ୍କୁ ବାଲିଫୁଲ ନାମକ ସେଂଘଗନ୍ଧ ସାଧାରଣ ଫୁଲ ଭଳି ଲଗିକରାଯାଏ । ସନ୍ଧ୍ୟାରେ ପୂଜକମାନେ ଲୁହାକଣ୍ଟା ଲଗା ଚଉକିରେ ବସନ୍ତି, କଣ୍ଟକଯୁକ୍ତ ଲତାମାଳରେ ଝୁଲୁଥିବା ଦୋଳିମାନଙ୍କରେ ବସନ୍ତି । ସେହି ସମୟରେ ବହୁତ ରସିକ ନାଗର ନାଗରୀ, ଯୁବକ-ଯୁବତୀ ବାଲିଫୁଲ ହାତରେ ଧରିଧରି ହୋଇ 'ବାଲି-ଫୁଲ' ମିତ ବସନ୍ତି । କଳସ ପାଣିରେ ରଙ୍ଗ ଖେଳନ୍ତି ।

ବର୍ଷ ତିନିରେ ଥରେ ଉଦଯାପିତ ହେବା ଭଳି ପ୍ରତି ତିନିବର୍ଷରେ ଥରେ ମଫସଲ ଅଞ୍ଚଳରେ ଶ୍ରେଷ୍ଠ ଗ୍ରାମ ଓ ଶ୍ରେଷ୍ଠ ସହରମାନଙ୍କରେ ଅନୁରୂପ ତିନିବର୍ଷିଆ ବାଲିଯାତ୍ରା ହୁଏ । କେଉଁଠି ତାହା ୨୧ ଦିନ ତ କେଉଁଠାରେ ମାସେ କାଳ ଯାତ୍ରା ଚାଲିଥାଏ । ଶେଷ ଦୁଇ ତିନିଦିନରେ ବିରାଟ ମେଳା ଓ ହାଟ ବସେ । ବାରବର୍ଷରେ ଥରେ ହେବା ଉତ୍ସବକୁ ୧୨ ବର୍ଷିଆ ବାଲି କହନ୍ତି ।

ବାଲିଯାତ୍ରା ଭଳି ଆଦିବାସୀଙ୍କର 'ମଣ୍ଡେଇ' ନାମକ ଏକ ବିରାଟ ଯାତ୍ରା ଏ ଅଞ୍ଚଳରେ ପ୍ରସିଦ୍ଧି ଲାଭ କରିଛି, ଏହା ପ୍ରତିବର୍ଷ ମାଘମାସର ପ୍ରତି ଶୁକ୍ରବାରରେ ଆରମ୍ଭ ହୋଇ ଦୁଇ ତିନିଦିନ ଅନୁଷ୍ଠିତ ହୁଏ । ମାଘମାସର ପ୍ରଥମ ଶୁକ୍ରବାର ଦିନ କୋରାପୁଟ ଜିଲ୍ଲା ଭୈରବ ସିଂହପୁରରେ, ୨ୟ ଶୁକ୍ରବାର ଦିନ ବୋରିଗୁମାରେ, ତୃତୀୟ ଗୁରୁବାର ଓ ଶୁକ୍ରବାର ଦିନ ନବରଙ୍ଗପୁର ଜିଲ୍ଲା ଡାବୁଗାଁ ଏବଂ ୪ର୍ଥ ଶୁକ୍ରବାର କୋଷାଗୁମୁଣ୍ଡାରେ ଏହା ହୁଏ । ଏହାଛଡ଼ା ନବରଙ୍ଗପୁର ଜିଲ୍ଲା, ହାଟ-ଭରଣ୍ଡି, କୁନ୍ଦେଇ, ଚନ୍ଦାହାଣ୍ଡି ଠାରେ ମଧ୍ୟ ଏଇଭଳି ପର୍ବମାନ ପାଳିତ ହୁଏ ।

ଶ୍ରୀ ଜଗନ୍ନାଥ ମନ୍ଦିର ଯେଉଁଠି ଅଛି ସେଠି ରଥଯାତ୍ରା ହେଲା ଭଳି, ଯେଉଁଠି ଭୈରବ ମନ୍ଦିର ଅଛି (ଭୈରବୀ ନୃତ୍ୟନ୍ତି) ସେଠି ଏହି ବିରାଟ ମଣ୍ଡେଇ ଯାତ୍ରା ହୁଏ । ଭୈରବ ମହାପ୍ରଭୁଙ୍କର ଏହା ବାର୍ଷିକ ଉତ୍ସବ । ଭୈରବଙ୍କର ସ୍ୱତନ୍ତ୍ର ପୂଜକ 'ଦିହ' ନାମରେ ଥାଆନ୍ତି, ସେମାନେ ଆଦିବାସୀ ସମ୍ପ୍ରଦାୟର ହୋଇଥାନ୍ତି ଏବଂ ଆଦିବାସୀ ଭାଷାରେ ଶ୍ଳୋକମାନ ପଢ଼ି ସାରାଦିନ ପୂଜାର୍ଚ୍ଚନା କରନ୍ତି । ମନ୍ଦିର ଭିତରେ ଠାକୁରଙ୍କ ସାମନାରେ ମନ୍ଦାର ଫୁଲ, ଝୁଣା ଧୂପ ସହ ନଡ଼ିଆ, କଦଳୀ, ଗଜାମୁଆଁ, ଗୁଡ଼ପଣା ଆଦି ନୈବେଦ୍ୟ ଭୋଗହୁଏ, କେହି କେହି ବାଦାରେ

ହୋଇଥାଏ ମଧ୍ୟ ଦେଇଥାନ୍ତି । ଦେବଙ୍କ ଉକ୍ତ ସିନ୍ଦୂର ଅର୍ଚ୍ଚନା କରାଯାଏ ଏବଂ ତନ୍ତ୍ରୋକ୍ତ ଭୈରବ ମଣ୍ଡଳ ବସେ ।

ମନ୍ଦିରରେ ଯାତ୍ରା ଦିନ ବହୁତ ମେଳା, ନାଚ, ଗୀତ, ଅପେରା ହୁଏ, ହାଟ ବଜାର ଦୋକାନ ବସେ । ହଜାର ହଜାର ଯାତ୍ରୀ ମନ୍ଦିରକୁ ଯାଇ ଭୈରବଙ୍କୁ ଦର୍ଶନ କରନ୍ତି, ମାନସିକ କରନ୍ତି ଏବଂ ଛୋଟ ବାଳକ, ବାଳିକାମାନଙ୍କୁ ଲଣ୍ଡିତ ମସ୍ତକ କରି ବାଳ ଉତ୍ସର୍ଗ କରିଥାଆନ୍ତି । ଏହା ଏକ ତାନ୍ତ୍ରିକ ପୂଜା ବୋଲି କୁହାଯାଏ । ଉତ୍ସବରେ ନିଜ ଜିଲ୍ଲା ମାନଙ୍କର ଯାତ୍ରୀ ଏବଂ ମଧ୍ୟପ୍ରଦେଶରେ ବହୁ ସଂଖ୍ୟକ ଯାତ୍ରୀ ମଧ୍ୟେ ଏକତ୍ର ହୋଇଥାନ୍ତି । ଏସବୁ ପର୍ବ ଉତ୍ସବରେ ଆଦିବାସୀ ମାନେ ସୀମାହୀନ ଆନନ୍ଦ ଉଲ୍ଲାସ ଅନୁଭବ କରିଥାନ୍ତି ।

(ସୌଜନ୍ୟ—ସାଃ ସମାଜ)



ନବରଙ୍ଗପୁର ଜିଲ୍ଲାର ଉମରକୋଟ ସହରର ତିନି କିଲୋମିଟର ଦୂରରେ ପଲ୍ଲୀଗ୍ରାମ ବଡ଼ଭରଣ୍ଡି, ବସନ୍ତର ଗଲବେଳେ ଆଖି ଝଲସାଇଦିଏ କେତୋଟି ସୁଦୃଶ୍ୟ ମନ୍ଦିର ରାସ୍ତାକଡ଼ରୁ ସ୍ୱଳ୍ପ ଦୂରର ଢେଉଆ ଭୂଇଁରେ । ଅବିଶ୍ୱା-ସମ୍ଭବ କିନ୍ତୁ ସତ୍ୟ ଯେ ଏ' ସବୁ ବନବାସୀ ଆଦିବାସୀ ଶିଳ୍ପୀ ମିସ୍ତ୍ରୀର ହାତରେ ନିର୍ମିତ ହୋଇଛୁ ବର୍ଣ୍ଣବୈଚିତ୍ର ସ୍ଥାପତ୍ୟକଳାର ଅପରୂପ ସ୍ଥାପତ୍ୟ । ଧନ୍ୟ କହୁଛନ୍ତି ଲୋକେ ସ୍ଥପତିଙ୍କୁ ।

ବଡ଼ଭରଣ୍ଡି ଗ୍ରାମରୁ ସଂଲଗ୍ନ ହୋଇ ରହିଛି ଗୋଟିଏ ପଟେ ଏକା-ସ୍ଥଳରେ ମହିମା ଧର୍ମର ଶୂନ୍ୟ ମନ୍ଦିର, ଭତରା ଜାତିର କୁଳଦେବୀ ମାଁ କାଙ୍କାଳିନ୍ନ ଓ ଗ୍ରାମ ଦେବତାଙ୍କ ତିନୋଟି ମନ୍ଦିର । ଅନ୍ୟ ପାର୍ଶ୍ୱରେ ଦଣ୍ଡେଶ୍ୱରୀ ମାତାଙ୍କ ଭବ୍ୟ ମନ୍ଦିର । ଏହି ଗୁରୁଚିପାକ ବର୍ଣ୍ଣାଢ଼୍ୟ ମନ୍ଦିର କୌଣସି ରାଜା ମହାରାଜା ଜମିଦାର କିମ୍ବା ଧନାଢ଼୍ୟ ବ୍ୟକ୍ତିଙ୍କ ଦ୍ୱାରା ପ୍ରତିଷ୍ଠା କରାଯାଇ ନାହିଁ । ସବୁ ମନ୍ଦିର ଗ୍ରାମର ଆଦିବାସୀ ଜନତାଙ୍କ ଚାନ୍ଦା ଭେଟି ଦାନରେ ନିର୍ମିତ ହୋଇଛି ଏବଂ ତା'ର ନିତ୍ୟସେବାପୂଜା ପରିଚାଳନା ପର୍ବ ଉତ୍ସବ ମଧ୍ୟ ସର୍ବସାଧାରଣଙ୍କ ବ୍ୟୟରେ ସମାହିତ ହେଉଛି ।

ସ୍ଥାନୀୟ ଆଦିବାସୀ ମିସ୍ତ୍ରୀ ବା ସ୍ଥାପତ୍ୟ ଶିଳ୍ପୀ ଶ୍ରୀ ହନୁ ଭତରାଙ୍କ ନକସା ଓ କ.ଗୋଷ୍ଠ କୌଶଳର ନିର୍ଦ୍ଦେଶକ୍ରମେ ଏହି ଗୃରେଗାଟି ମନ୍ଦିର ଆଦିବାସୀ ସହ-କାରୀ ମିସ୍ତ୍ରୀମାନେ ଏହା ନିର୍ମାଣ କରିଛନ୍ତି । ଏ ଅଞ୍ଚଳର ବହୁସଂଖ୍ୟକ ଆଦିବାସୀ ଏ'ଭଳି ମିସ୍ତ୍ରୀ ପେଶାକରି ଜୀବିକା ନିର୍ବାହ କରିବା ସଙ୍ଗେ ସଙ୍ଗେ ବହୁ ହର୍ମ୍ୟନିର୍ମାଣ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥାନ୍ତି । ହନୁ ଭତାଙ୍କ ଘର ଡ଼ାବୁଗାଁ ନିକଟସ୍ଥ କେରେଣ୍ଡି ଗ୍ରାମରେ ।

ଏହି ଅଞ୍ଚଳରେ ବହୁ ଆଦିବାସୀ ମହିମା ଧର୍ମରେ ଦୀକ୍ଷିତ ହୋଇଛନ୍ତି । ସେମାନଙ୍କର 'ଶୂନ୍ୟ ମନ୍ଦିର' ସର୍ବପ୍ରଥମେ ଆକର୍ଷଣୀୟ ହୋଇ ଆଖିକୁ ଦିଶିଯାଏ । ଏହା ଇଟା ସିମେଣ୍ଟରେ ତିଆରି ହୋଇଥିଲେ ମଧ୍ୟ ତା'ର ନିର୍ମାଣ ଶୈଳୀ ତଥା କମନୀୟ କାରୁକାର୍ଯ୍ୟ ଦେଖି ଦର୍ଶକ ଚମତ୍କୃତ ହୋଇଥାଏ । ଏହି ମନ୍ଦିରରେ ପ୍ରତି ବର୍ଷ ଫାଲ୍ଗୁନ ଶୁକ୍ଳ ଚତୁର୍ଥୀ ରାଜାଗିରି ଦିନ ଏକ ବୃହତ ସାଧୁମେଳା ହୁଏ । ବହୁ ସାଧୁ ସନ୍ଥଙ୍କ ସମାବେଶରେ ପୂର୍ଣ୍ଣିମା ଦିନ ଅଖଣ୍ଡ ଅଲେଖ ଘୃତ ଯଜ୍ଞ, ନାମ ଯଜ୍ଞ ତଥା ବିବିଧ ଅନୁଷ୍ଠାନ କରାଯାଏ । ସ୍ଥାନୀୟ ବିଶିଷ୍ଟ ବନବାସୀ ନେତା ସ୍ୱର୍ଗତ ବଳି ପୂଜାରୀଙ୍କ ତତ୍ତ୍ୱାବଧାନ ଓ ଜନ ସହଯୋଗ କ୍ରମେ ଗତ ୧୯୫୧ ମସିହାରେ ଏଠି ଏକ 'ବାଲ୍ୟଲୀଳା' ମହୋତ୍ସବ ବିପୁଳ ସମାରୋହର ସହିତ ସମାପିତ ହୋଇଥିଲା ।

ଗ୍ରାମ ସୀମାନ୍ତର ଏକ ପ୍ରଶସ୍ତ ଭୂଭାଗରେ ଥିବା ଏହି ଶୂନ୍ୟ ମନ୍ଦିର ଗମ୍ବୁଜାକୃତି ହୋଇ ମଧ୍ୟଭାଗରେ ଶୋଭା ପାଉଛି । ପ୍ରାଚୀରର ଚତୁର୍ଦ୍ଦିଗରେ ଚାରିଦ୍ୱାର ମୁଖଶାଳା ସହିତ 'ଆର୍ଚ୍ଚ' ଯୁକ୍ତ କମକୁଷ୍ଠିର ଡ଼ାଲକ୍ଲାମ ହୋଇଛି ।

ଶୂନ୍ୟ ମନ୍ଦିରଠାରୁ ଅଳ୍ପ ଦୂରରେ ଏବଂ ସେହି ଟେରିଆ ଭୂଖଣ୍ଡ ମଧ୍ୟରେ ଆଉ ଦୁଇଟି ମନ୍ଦିର କାଙ୍କାଳମା ତଥା ଗ୍ରାମ ଦେବତାଙ୍କର ଏକକ ଏକ ପ୍ରାଚୀର ପରିସର ଭିତରେ ରହିଛି । ଗ୍ରାମଦେବତୀ ମନ୍ଦିର ବିଶେଷ ଗୃକଚକ୍ୟ ନଥିଲେ ମଧ୍ୟ ଗ୍ରାମବାସୀ ଓ ଅଞ୍ଚଳବାସୀଙ୍କ ବିଶେଷ ମାନ୍ୟତା ପାଇଥାଏ ଏବଂ ପ୍ରଶସ୍ତ ପିଣ୍ଡା ଓ ନିକଟରେ ଆମ୍ବ ଉପବନର ସୁବିଧା ଥିବାରୁ ଏଠାରେ ବହୁଳ ଭାବେ ବିବାହ ବ୍ରତାଦି ଶୁଭକାର୍ଯ୍ୟମାନ କରାଯାଏ । ଭାଦ୍ରବ ମାସରେ ହେଉଥିବା ନୂଆଁଖିଆ

ଏବଂ ପାଳିତ ହେଲେ ଏହି ପୀଠସ୍ଥଳୀ ମୁଖରିତ ହୋଇଉଠେ । ସନ୍ନିକଟରେ 'ମାଉଲି ମାଁ'ଙ୍କ ଭବ୍ୟ ମନ୍ଦିରଟିଏ ବିରାଜିତ ।

ନିକଟସ୍ଥ "କାଙ୍କାଳିନୀ" ଦେବୀ ମନ୍ଦିରକୁ ଭତରା ଜନଜାତିର ଲୋକେ ବିଶେଷ ଗୁରୁତ୍ୱ ଦେଇଥାନ୍ତି । କାଙ୍କାଳିନୀ ମାତାଙ୍କୁ ସେମାନେ କୁଳଦେବୀ ଭାବରେ ବହୁ ନିଷ୍ଠା ତଥା ଶ୍ରଦ୍ଧାର ସହିତ ପୂଜା ଆରାଧନା କରନ୍ତି । ଏହି ମନ୍ଦିର ମଜବୁତ ପଥର ଇଟା ସିମେଣ୍ଟରେ ନିର୍ମିତହୋଇ ଗମ୍ଭୀର ଓ ନାଟ୍ୟମନ୍ଦିର ବା ନାଟ୍ୟମଣ୍ଡପ ଦୁଇ ଭାଗରେ ବିଭକ୍ତ ହୋଇଛି । ମନ୍ଦିର ଗଢ଼ଣରେ ଶିଳ୍ପୀ ତାଙ୍କ ହାତର କାରୁ-ମତି ଓ ଶିଳ୍ପ ଚାତୁର୍ଯ୍ୟ ଦର୍ଶାଇଛନ୍ତି । ପ୍ରାୟ ଚାରି ପାଞ୍ଚ ଫର୍ଲଙ୍ଗ ଦୂରରେ ଅମର-କୋଟ ତହସିଲ ଅଞ୍ଚଳର ବିଖ୍ୟାତ ବଦେବୀ ମାଁ ପେଣ୍ଡ୍ରାଣୀ ମନ୍ଦିର । ତାହା ମଧ୍ୟ ଉଚ୍ଚ ଓ ଗମ୍ବୁଜାକୃତିରେ ନିର୍ମିତ ।

କାଙ୍କାଳିନୀ, ମାଉଲି, ଗ୍ରାମଦେବତା ଓ ପେଣ୍ଡ୍ରାଣୀ ଏହି ଚାରିଗୋଟି ମନ୍ଦି-ରରେ ପ୍ରତି ମାସର ଅମାବାସ୍ୟାରେ ବିଶେଷ ପୂଜାର୍ଚ୍ଚନା ହୁଏ, ତା' ବ୍ୟତୀତ ଚୈତ୍ର ଏବଂ ବାସନ୍ତୀକ ନବଦିନ, ଶାରଦୀୟ ପୂଜା ଦଶଦିନ ମଧ୍ୟ ବହୁ ଆଡ଼ମ୍ବରରେ ପର୍ବୋତ୍ସବ ପାଳିତହୋଇଥାଏ । ଏସବୁ ପାର୍ବଣ ଅବକାଶରେ ସାଧାରଣ ଜନତା କାଠ ଚାଉଳ ଇତ୍ୟାଦି ଆଣି ଅନ୍ନଭୋଗ ସମର୍ପଣ ପୂର୍ବକ ଠାଏ ଠାଏ ଭୋଜି କରି ଖାଉଥିବା ଦୃଶ୍ୟ ଅତି ମନୋହର ମନେହୁଏ ।

ଊନବିଂଶ ଶତାବ୍ଦୀର ପ୍ରଥମ ଦଶକରେ ନିର୍ମିତ ହୋଇଥିବା ଏସବୁ ଆଦିବାସୀ ସ୍ଥାପତ୍ୟ ଅନନ୍ୟ ତଥା ବନବାସୀର ଉନ୍ନତ ରୁଚିର ପରିଚାୟକ । ପୂର୍ବତନ ରାଷ୍ଟ୍ରମନ୍ତ୍ରୀ ତଥା ବର୍ତ୍ତମାନର ଅମରକୋଟ ବିଧାୟିକା ଶ୍ରୀମତୀ ପ୍ରେମା ପୂଜାରୀଙ୍କ ପୂର୍ବପୁରୁଷ ଏସବୁ ମନ୍ଦିରର ପୂଜକ ଥିଲେ । ଏହା ଅବଶ୍ୟ ଦର୍ଶନୀୟ ।

[ ସୌଜନ୍ୟ—ସାଃ ସମାଜ ୨୨-୫-୯୭ ]

— ● —

ପୂର୍ବୋକ୍ତ ଅବିଭକ୍ତ କୋରାପୁଟ ଜିଲ୍ଲା, ବିଶେଷକରି ଅଧୂନାତନ ନବରଙ୍ଗପୁର ଜିଲ୍ଲାରେ କାର୍ତ୍ତିକ ଶେଷ ତଥା ମାଗଶୀର ମାସରେ ପ୍ରାୟତଃ 'ଦିଆଳି' ପର୍ବ ପାଳନ କରନ୍ତି ଅନୁସୂଚିତ ଜାତି ଓ ଉପଜାତିର ଲୋକମାନେ । ଯଦିଓବି ଅମାବାସ୍ୟାକୁ ଦେବାଲି ବା ଦିଆଳି ବୋଲି ବୋଲି ଅନେକେ କହିଥାଆନ୍ତି କିନ୍ତୁ ଏହି ଦିଆଳି ପର୍ବ ପାଠ ବିଧାନ ଏବଂ ସଂପୂର୍ଣ୍ଣ ଭିନ୍ନ ରୀତିରେ ପାଳିତ ହୁଏ ।

ଏହା ଗୋମାତାର ସ୍ୱତନ୍ତ୍ର ପର୍ବ, ଏହାକୁ ଆଦିବାସିମାନେ ନିଜସ୍ୱ ଭାବେ ପାଳନ କଲାବେଳେ ଗିରିଜନ ହରିଜନ ସାଡ଼ମ୍ବର ପାଳନ କରେ । ସାଧାରଣତଃ ଏହି ଅଞ୍ଚଳରେ ମାର୍ଗଶିର ମାସ ବେଳକୁ ଭଣ୍ଡା, ଡ଼ିପ ବା ଡ଼ଙ୍ଗର ଭୂଇଁର ଧାନ ପାଚିଲା ହୋଇ କଟାହୋଇ ଚାଷୀର ଘରକୁ ଆସିଯାଇଥାଏ, ଘରର ନୂଆ ଧାନ ଆସିଲେ ଦିଆଳି ପୂଜା ଆରମ୍ଭ ହୁଏ । ବନବାସୀ ପୁରବାସୀ ସମସ୍ତେ ନିଜ ଘରେ, ଗୁହାଳରେ ଗାଈ, ବଳଦଙ୍କୁ କୃତଜ୍ଞତା ଜଣାଇବା ପାଇଁ ଏହି ବିଧାନ ପାଳନ କରନ୍ତି । ଗାଈ କ୍ଷୀର ଦିଏ, ବଳଦ କ୍ଷେତକୁ ଗୋବର ସାର ଦିଏ, ଆଉ ବଳଦ ହଳର ପରିଶ୍ରମରେ ଧାନ ଉତ୍ପାଦନ ହୁଏ । ଏହା ସତ୍ତ୍ୱେ ଗାଈ, ବଳଦ କୁଣ୍ଡା, ପାଳ ଘାସପତ୍ର ଖାଇ ବଞ୍ଚନ୍ତି, ତା'ର ଶ୍ରମ ଧନ ଧାନ, ଚାଉଳ, ହରି, ମୁଗ ଖାଏ ମଣିଷ । ସରଳ ଆଦିବାସୀ, ହରିଜନର ହୃଦୟ ଅଛି ଏବଂ ମାନବିକତା ଅଛି ତେଣୁ ସେ 'ଦିଆଳି' ପର୍ବ ପାଳନ କରି ଗାଈ ନିକଟରେ କୃତଜ୍ଞତା ଜଣାଏ ।

ଭିନ୍ନଭିନ୍ନ ଦିନ ଭିନ୍ନଭିନ୍ନ ଗ୍ରାମରେ ଏଇ ପର୍ବ ପାଳନ କରାଯାଇଥାଏ । ଗୋ ମାଲିକ ଘର ଅଗଣାରେ ଖୁଣ୍ଟ ପୋତି ଗାଈ, ବଳଦ, ବାଛୁରୀ ଙ୍କୁ ବାନ୍ଧି ଗାଧୋଇ ଦିଅନ୍ତି, ତା' ମଥାରେ ହଳଦି, ସିନ୍ଦୂର ଚନ୍ଦନ ମାଖିଦିଅନ୍ତି; କାନ୍ଧରେ ପକାଇ ଦିଅନ୍ତି ନୂଆ ଲୁଗା । ପରେ ଘିଅ, ଚାଉଳ, ଡ଼ାଲି ବିଭିନ୍ନ ପ୍ରକାର ସବଜି ଲଉ୍ୟ ଛତୁରେ ଚେଙ୍ଗ୍ତି ବା ପେଜ ରନ୍ଧନ କରି ଗାଈ ଗୋରୁଙ୍କୁ ଖାଇବାକୁ ଦିଅନ୍ତି । ଗାଈ, ବଳଦ ଯାହା ଉପୁଜାନ୍ତି ତାହା ତାଙ୍କ ଦରବ ତାଙ୍କୁ ଅରପିଲେ ଅଧିକାଂଶ ହେଲା କ'ଣ ? ଧାନ, ହରି, ମୁଗ ତ ସେ କ୍ଷେତରୁ ଘରକୁ ଆଣିଛି । ତେବେ କୃତଜ୍ଞତା ସେଇଠି, ଯଦି ଦିଆଯାଏ ସେ ଉପୁଜାଇ ନଥିବା ଦ୍ରବ୍ୟ । ତେଣୁ ପାଚିଲା କଦଳୀ ଓ ଛତୁ, ମୁଖ୍ୟତଃ ବାଲୁଙ୍ଗା ଧାନର ଚାଉଳଗୁଣ୍ଡକୁ ଖାଇବା ପାଇଁ ଦିଆଯାଏ । ଏକପ୍ରକାର ବାଲୁଙ୍ଗା ଧାନର ସ୍ଥାନୀୟ ନାମ "କାର୍ଶିଣି" । ବିଶେଷକରି "ଝିଟିଙ୍ଗି" ନାମକ ନାଳ ଗାଡ଼ଆରେ ମନକୁମନ ଗଛ ହୋଇଥିବା

ଝିଟିଙ୍କି ଚୂଡ଼ା ଗାନ୍ତ, ବଳଦଙ୍କୁ ଖୁଆଇବା ବାଧ୍ୟତାମୂଳକ । ଗାଈ, ବଳଦଙ୍କୁ ପରିବେଷୋର ପରିବାରର ସମସ୍ତ ସଦସ୍ୟ ଅବାଳ ବୃଦ୍ଧ ବନିତା ମୁଣ୍ଡିଆ ମାରି ପ୍ରଣାମ କରନ୍ତି । ଗାଈ ପିଠିର ନୂଆ ଲୁଗା ନିଏ ଗାଈଆଳ ।

ସହର ହେଉ କି ମଫସଲ ହେଉ; ଗରିବ ହେଉକି ଧନୀ ହେଉ, କୃଷକ ହେଉ କିମ୍ବା ବ୍ୟବସାୟୀ ହୁଅନ୍ତୁ ଯାହା ଘରେ ଗାଈ, ବଳଦ, ଗୋବତ୍ସା, ବାଛୁରୀ ଥାଏ, ସେଇ ଘରର ମାଲିକ କୁଣ୍ଡା ତୋରାଣି ଦେଲେ ମଧ୍ୟ, ତାଳ ଚର ଘାସ ନଖାଇଲେ, ମୁକ୍ତ ବାୟୁରେ ବିଚରଣ ନକଲେ ଗୋଜାତି ହୃଷ୍ଟପୁଷ୍ଟ ଓ କର୍ମକ୍ଷମ ହୋଇପାରିବ ନାହିଁ । ବଳଦ ଜମିରେ ହଳ କରିବାରେ କ୍ଳାନ୍ତ ହୁଏ, ଗାଈ ଦୁଧ ଦେବାରେ କୁଣ୍ଠିତ ହୁଏ । ତେଣୁ ମାସିକ ବେତନ ବା ପାରିଶ୍ରମିକ ଦେଇ କିମ୍ବା ବାର୍ଷିକ ବୃତ୍ତି ଖଞ୍ଜି ଗାଈଆଳ ନିଯୁକ୍ତ କରାଯାଏ । ସେ ଗୋଚରଣ ଭୂଇଁକୁ ନେଇ ଗାଈ ଚରାଏ ।

ଏଇ ବନ ଗିରି ଘେରା ଡ଼ାଲୁ ଅଞ୍ଚଳରେ କେବଳ ଗାଈଆଳ ଗଉଡ଼ର ଭୂମିକା ନିର୍ବାହ କରନ୍ତି ହରିଜନ ସମ୍ପ୍ରଦାୟର ଲୋକେ । ସେମାନଙ୍କ ମଧ୍ୟରେ .. 'ଡମ୍ବ' ନାମକ ଏକ ଉପଜାତି ଅଛନ୍ତି, ଏମାନେ ପ୍ରାୟତଃ, ସାଧାରଣତଃ ମାଲିକର ଗୋଚାରଣ କାର୍ଯ୍ୟ କରି ଏବଂ ଆମ୍ବ ଦିନରେ ତୋଟାର ରକ୍ଷଣାବେକ୍ଷଣ ପ୍ରହରୀ କାମ କରି ଜୀବିକା ନିର୍ବାହ କରନ୍ତି ।

ଏ ଅଞ୍ଚଳରେ ଏମାନଙ୍କୁ "ଡମ୍ବଗଉଡ଼" କୁହାଯାଏ । ଏମାନଙ୍କର ଏହି ଦିଆଲି ପର୍ବ ଏକ ଆନନ୍ଦ ଉଲ୍ଲାସ ଓ ଉପାର୍ଜନର ବିଶିଷ୍ଟ ପର୍ବଭାବେ ସୁପରିଚିତ । ଏମାନେ ଗୋଚାରଣ କରି ମାଲିକ ଗୃହରୁ ସାଧାରଣ ମାସିକ ପ୍ରାପ୍ୟ ପାଇ ଆସୁଥାନ୍ତି, ଏବେ ଏଇ ପର୍ବ ଅବସରରେ ବିଶେଷ ବକ୍ସିସ ବା ଇନାମ ପାଆନ୍ତି ।

ଗଉଡ଼ ଦିଆଲି ଋତୁ ଆରମ୍ଭ ହେବା ମାତ୍ରେଇ ପ୍ରାୟ ମାସେ କାଳ ପ୍ରତି ମାଲିକର ଗୃହାଙ୍ଗନକୁ ଯାଇ ନୃତ୍ୟକରି ପୁରସ୍କାର ଆଦାୟ କରେ । ସେଇ ହରିଜନମାନଙ୍କର ଏକ ବାଦ୍ୟକାର ଗୋଷ୍ଠୀ ଅଛନ୍ତି, ସେମାନେ ଆବଶ୍ୟକ ସମୟରେ ବିବାହ, ବ୍ରତ, ପୂଜା ଉତ୍ସବରେ ପାଉଣା ନେଇ ବାଦ୍ୟ ବଜାନ୍ତି । ଏଇ ବାଦ୍ୟକୁ "ଡମ୍ବ ବାଇଦ" କୁହାଯାଏ । ଏହି ବାଦ୍ୟ ଦଳରେ ଦୁଇଟି ମହୁରୀ, ଗୋଟିଏ ଢୋଲ, ଗୋଟିଏ ଟାମକ ଓ ଗୋଟିଏ "ଟିଡ଼ିବିଡ଼ି" ଥାଏ । ଗଉଡ଼ ବେଶଭୂଷା

ହୋଇଥାଏ । ତା' କଟିର ପାଇକ କଚ୍ଛା, କମରରେ ଭିଡ଼ା ହୋଇଥାଏ ଗାମୁଛା, ନଗ୍ନ ଦେହରେ ଧଳା ପଥରର ଚୂର୍ଣ୍ଣବୋଳା ହୋଇଥାଏ, ପାଦରେ ଥାଏ ଘୁଙ୍ଗୁର (ନୁପୁର) ଏବଂ ଡାହାଣ ହାତରେ ଧରଥାଏ ଖଣ୍ଡା ବା ଖଡ୍ଗ ଓ ବାଆଁ ହାତରେ ବାଉଁଶ ବାଡ଼ି ।

ପ୍ରତ୍ୟେକ ଗୋପାଳକ ଘରକୁ ଯାଏ ନୃତ୍ୟରତ ଗଉଡ଼, ସେ ଖାଲି ହାତରେ ଯାଏ ନାହିଁ ପାଚିଲା କଖାରୁ ଗୋଟାଏ କମ୍ବା ପାଚିଲା କଦଳୀରୁ ଫେଣିଏ ଫେଣିଏନେଇ ପ୍ରତ୍ୟେକ ମାଲିକଘରର ସାମନା ପିଣ୍ଡାରେ ଥୋଇଦିଏ ଭେଟିସ୍ୱରୂପ । ସେ ନାଚେ ଆଉ ନାଚେ, ବନ୍ଧୁ ସମସ୍ତ ଧରି କେବେ ଥିଏ ନାହିଁ । ମାଲିକ ଘରରୁ ତା'କୁ ମିଳେ ଧାନ, ଗୁଡ଼ଜଳ, ଟଙ୍କାପଇସା ଇନାମ ଓ ଶାଢ଼ୀ, ଧୋତି ନୂଆଲୁଗା । ଯଦି ମନ ଉତ୍ସାହିଏ ଆହୁରି ଅଧିକ ମାଗେ, ମନ ପାଇଗଲେ, ମନ ପୂରିଗଲେ ପଦ୍ଧାରି ଚଳାଏ ଆର ଘରକୁ । ତାହାର ନାଚ ପ୍ରକୃତରେ ସ୍ୱତନ୍ତ୍ର ଏବଂ ଦର୍ଶମାସ୍ତ ଏକ ଅଭିନବ ଦୃଶ୍ୟ ।

ହରିଜନ ଗଉଡ଼ ସାହିରେ ମାସାଧିକ କାଳ ଲାଗିଥାଏ ଏଥିଲାଗି ପରବ । ଘରେ ଘରେ ହୋଇଥାଏ ସୁଖାଦ୍ୟ, ଭୋଜିଭାତ । ଏଇ ଦିନେ ଗୋପ ବୃନ୍ଦାବନ ଗଉଡ଼ ଜାତିର ଲଉଡ଼ିଖେଳ, ଓଡ଼ିଶାର ପାଇକ ଖଣ୍ଡା ଖେଳ ଭଳି ମିଶାମିଶି ଏକ ମଧୁର ଏକକ ନୃତ୍ୟର ପର୍ବ । ସରଳ ବନଜନ, ହରିଜନର ଏଇ "ଗଉଡ଼ନାଚ"କୁ ଆଧୁନିକ ବେଶଭୂଷା କମ୍ବା ବିଦେଶୀ "ମିଉଜିକ ବାଦ୍ୟ" ଆଦୌ ସ୍ପର୍ଶ କରି ପାରିନାହିଁ । ତା'ର ନୃତ୍ୟ, ବାଦ୍ୟ ଓ ଆତ୍ମିକ ଆନନ୍ଦ ନିଚ୍ଛକ ନିଜସ୍ୱ ଓ ପୂର୍ଣ୍ଣତଃ ପ୍ରାକୃତିକ । (ସୌଜନ୍ୟ—ସା: ସମାଜ ) ।



ସେମାନେ ଭୂମିପୁତ୍ର । ଝୋଲା ପରି, ପାହାଡ଼ ପବତର ଶ୍ୟାମଳ ବୈଭବ ପରି ସେମାନେ ସ୍ୱଚ୍ଛ ଓ ସରଳ । ଦେଶ୍ୱପରି ହିଁ ସେମାନଙ୍କର କୃଷି । କିନ୍ତୁ ସେମାନଙ୍କୁ 'ବୋନ୍ସାଇ' କରିଦେବା ପାଇଁ ଯେଉଁ ସଭ୍ୟତା ତତ୍ପର ହୋଇଛନ୍ତି, ତାହାର ନାମ କ'ଣ ଆଧୁନିକତା ?

ଅବିଭକ୍ତ କୋରାପୁଟଜିଲ୍ଲାର ସବୁ ଅଞ୍ଚଳରେ ଦେଖାଯାଆନ୍ତି ଆଦିବାସୀ ଉପଜାତି ପରଜା ବିଶେଷକରି ଆଧୁନିକ ଖୋଦ୍ କୋରାପୁଟ ଜିଲ୍ଲାର ମାଚାଲପୁର

ଲକ୍ଷ୍ମୀପୁର, ଜୟପୁର, ବୋରିଗୁମା ପ୍ରଭୃତି ସ୍ଥାନରେ ଏହି ଜନଜାତିର ପ୍ରାବଲ୍ୟ ପରିଦୃଷ୍ଟ ହୁଏ ।

ଦେଶସାରା ଆଦିବାସୀ କଲ୍ୟାଣ ନାମରେ ବହୁ ଗୁମ୍ଫି ଚୋପାନ ଉଠୁଛି ସତ, କିନ୍ତୁ ଏହି ଶିରଚଞ୍ଚଳ, ଅତି ସରଳ, ବିପନ୍ନ ବପୁ, କର୍ମଠ, ନିଜ ସଂସ୍କୃତିରେ ଧନୀକ ଏହି ଜାତି ନିମନ୍ତେ ସଭ୍ୟ ସମାଜ ଓ ସରକାର କ'ଣ ସବୁ କରିଛନ୍ତି, ତା'ର ଏକ ସମୀକ୍ଷା ହେବା ଦରକାର । କିଛିଟା ଅନୁଦାନ ଦେଇଦେଲେ କିମ୍ବା ଥରେ ଅଧେ ସାଧାରଣତନ୍ତ୍ରଦିବସ ଅବସରରେ କେନ୍ଦ୍ରୀୟ ଦିଲ୍ଲୀ, ଭୁବନେଶ୍ୱରରେ ପରଜା ନୃତ୍ୟ ପ୍ରଦର୍ଶନ ସକାଶେ ସରକାରୀ ଖର୍ଚ୍ଚରେ ଗଣ୍ଡେ ପରଜା ରମଣୀଙ୍କୁ ସେଠାଏ ବୁଲାଇ ନେଇ ଆସିଲେ କ'ଣ କେବେ କୌଣସି ଜନଜାତିର ସାମାଜିକ କିମ୍ବା ସାଂସ୍କୃତିକ ଉନ୍ନତି ହୋଇଯାଏ କି ? ସେମାନଙ୍କର ସର୍ବବିଧ ଉନ୍ନତି ନିମନ୍ତେ ଆର୍ଥିକ ଦିଗ ନୁହେଁ, ଆତ୍ମିକ ବା ଆନ୍ତରିକ ଦିଗ ପ୍ରତି ଦୃଷ୍ଟି ଦେବା ଉଚିତ । ସର୍ବ ପ୍ରଥମେ ଅବଗତ ହେବା ଉଚିତ ଯେ, ସେମାନଙ୍କ ଜୀବନଧାରା ଓ ଦୃଷ୍ଟିର ପରିଚୟ କ'ଣ ? ଅସଲ ସ୍ୱରୂପର ସାନିଢକୁ ଆସିଲେ ଯାଇ ସେମାନଙ୍କ ପାଇଁ କିଛିଟା କରାଯାଇ ପାରିବ ।

ପରଜା ଏକ ସଂସ୍କୃତି ସମ୍ପନ୍ନ ଉପଜାତି । 'ପୁଷ୍ପୁନି' ଓ 'ଚଇତ ପରବ' ତା'ର ବୈଶିଷ୍ଟ୍ୟ ଜାଣନ୍ତୁ ତେବେ । ଯେତେବେଳେ ହରିଣ ଛୁଆ ଭଳି ଚଞ୍ଚଳ ଚମକ ଖେଳିବୁଲେ ଚଇତ ମାସରେ ଚଇତାଳି ପବନ, ସେତେବେଳେ ଚଇତ ପରବ ମନାନ୍ତି ପରଜା, ପରଜୁଣୀ । ମତୁଆଲା ହୋଇଉଠେ ତାରୁଣ୍ୟର, ଯୌବନର ସେମାନଙ୍କ ଚିକ୍କଣ ନିଟୋଳ ବପୁବନ୍ତ ତନୁ । ଗୁଡ଼ଳ, ଲନ୍ଦା, ମହୁଲି, ସଲପ ମଦର ପାନକରି ପାଗଳ ହୋଇଯାନ୍ତି, ନୃତ୍ୟ ଗୀତ ମଜଲିସର ସୁରା ଓ ବେସୁରା ତାଳେ ତାଳେ । ବୃକ୍ଷରେ ବୃକ୍ଷରେ ଭରିଯାଇଥାଏ ନାଲି, ନାରଙ୍ଗୀ ରଙ୍ଗ, ପଳାଶ ଫୁଲର ପ୍ରାଚୁର୍ଯ୍ୟ । ପରଜା ବଜାଏ 'ଢୁଙ୍ଗ୍ ଡୁଙ୍ଗା' ବାଦ୍ୟଯନ୍ତ୍ର, ଗଣ୍ଡାଏ ପରଜୁଣୀ ଧାଙ୍ଗଡ଼ି ମେଳ ହୋଇ କାନ୍ଧରେ, କଟିରେ ହାତ ଛନ୍ଦି ସମବେତ 'ଡେଙ୍ଗୁଡ଼' ନୃତ୍ୟ କରନ୍ତି ସାରା ବିନିଦ୍ର ରଜନୀ ।

ବର୍ତ୍ତମାନ ପରଜା, ବିନା ସରକାରୀ ସାହାଯ୍ୟ, ବିନା ପୃଷ୍ଠପୋଷକତାରେ ଏବେ କିଛି ବର୍ଷ ହେଲା ସେହି ରଙ୍ଗୁଡ଼ ନୃତ୍ୟରେ ସଂସ୍କାର ଆଣି, କେବଳ ଚଇତ ନୁହେଁ ସବୁ ମାସ, ସମସ୍ତ ଋତୁରେ ଦେଖାଇବାର ମଞ୍ଚ ପ୍ରସ୍ତୁତ କଲେଣି । ରଙ୍ଗାଣିଆ ପୋଷାକ ସାଙ୍ଗକୁ ମୃଦଙ୍ଗ, ଗିନି, କରତାଳ ବାଦ୍ୟର ତାଳେତାଳେ

ନାଚ ବୁଲିଲାଣି ଗାଆଁକୁ ଗାଆଁ, ସହରରୁ ସହର, ରାଜ୍ୟ ରାଜଧାନୀ । ଭୁବନେଶ୍ୱରରୁ ଦିଲ୍ଲୀ ଦରବାର ପର୍ଯ୍ୟନ୍ତ ଥରେ ଦୁଇଥର ନାଚ ଆସିଲାଣି । ଜୟପୁରର ସ୍ୱର୍ଗତଃ ଶାମୁକ ବେହେରା, ବୋରିଗୁମ୍ମାର ଶ୍ରୀ ଯୁଗଳ କିଶୋର ରାୟ ଓ ଲକ୍ଷ୍ମୀପୁର କାକିରିଗୁମ୍ମାର ଶ୍ରୀ ଗଙ୍ଗାଧର ନାୟକ ନୃତ୍ୟଗୁରୁଙ୍କ ପ୍ରେରଣାରେ ପରଜୁଣୀ ଝିଅ ମାନେ ସାମ୍ପ୍ରତିକରେ ଧାରାବାହିକ ନୃତ୍ୟଦଳ ଗଢ଼ି ନାଚନ୍ତି ସହର ଉତ୍ସବର ମଞ୍ଚରେ ପ୍ୟାଣ୍ଡେଲ ପଡ଼ିଆରେ, ପୂଜା ମଣ୍ଡପ ସାମନା, ବାହାଘର ସାମନା ଅଗଣାରେ । ନାଚନ୍ତି ବଡ ବଡ । ନୃତ୍ୟ ତ ମନଲୋଭା, ଗୀତ ଆହୁରି ଚମତ୍କାର ।

ଏବେ 'ରଞ୍ଜାଡ଼' ଗୀତ ପରଜୁଣୀ ପାଟିରୁ ଛଡ଼ାଇ ନେଇ ସଭ୍ୟମାନଙ୍କ ବ୍ୟବସାୟ କଲଣି, କ୍ୟାସେଟ ଆଦି ବାଜିଲଣି ପ୍ରାନ୍ତ ଭିତରୁ ରାଜ୍ୟ ବାହାରର ବହୁ ପ୍ରମୁଖ ସହରର ଦୋକାନ ବଜାରରେ ।

'ରଞ୍ଜାଡ଼' ନାମବାଚକ ଶବ୍ଦର ଅର୍ଥ ଭାବଗର୍ଭକ । ସରୁ, ସୁନ୍ଦର ଓ ଚିକ୍କଣ ଏବଂ ତନୁ ଉପାଦାନର ତରୁଣୀଙ୍କୁ କୁହାଯାଏ ରଞ୍ଜାଡ ଏବଂ ତରୁଣଙ୍କୁ କୁହାଯାଏ ପରଜା ଭାଷାରେ ରଞ୍ଜାଡ଼ା । ସୁଠାମ ଓ ଗେଡ଼ା ପୁରୁଷଙ୍କୁ କୁହାଯାଏ ବଞ୍ଜାଡା, ମହିଳାଙ୍କୁ କୁହାଯାଏ ବଞ୍ଜାଡ଼ । ପରଜାମାନଙ୍କ ଏକ ସ୍ୱତନ୍ତ୍ର କଥିତ ଭାଷା ରହିଛି । ସେଥିରେ ରହିଛି ବହୁ ଭାବବ୍ୟଞ୍ଜକ ମଧୁମୟ ଢୋଳକୀ ।

ପରଜାର ଅନ୍ୟତମ ବଶିଷ୍ଟ ଉତ୍ସବ ପୁଷ୍ପୁନି ବା ପୌଷପରବ । ସେତେବେଳେ କଅଁଳ ସକାଳର ଉଷ୍ମ ଖରାରେ ଆସେ ପୌଷ ମାସ ଆଉ ଶୀତୁଆ ସଞ୍ଜରେ ଆକାଶ ଅଗଣାକୁ ଝୁଲାଇ ପରଜା ମାଇପି, ମୁନୁଷ, ଜହ୍ନ ଉଦେଲେ, ଡୋଫା ଆଲୁଅର ଜ୍ୟୋସ୍ନା ବଧୌତ ହୋଇ ଧରଣୀରାଣୀର କୋଳରେ ପିଠଉ ପରି ଧଳା ଧଳା ଲାଗଇ ପଡ଼ିଲେ ଗଛଡ଼ାଳର ଫାଙ୍କରୁ ପରଜା ମନାଏ ପୁଷ୍ ପରବ ।

ଓଡ଼ିଶାର ସମସ୍ତ ମଣିଷ ଯେମିତି ଫଗୁଣ ମାସରେ ହୋଳି ଯାତ୍ରା କରି ରଙ୍ଗାଗ୍ନି ନିଆଁ ଜାଳେ ଏବଂ ଆନ୍ଧ୍ରବାସୀ ମକର ସଂକ୍ରାନ୍ତି ପୂର୍ବରାତି 'ଭୋଗୀ' ଜାଳେ ଠିକ୍ ସେପରି ପୌଷ ପୂର୍ଣ୍ଣିମା ପୂର୍ବ ରାତି ପରଜା ଜନପଦ ମାନଙ୍କରେ ବରାଟ କାଠଗଣ୍ଡି ସଜାଇ ସେଥିରେ ଦେବାଗ୍ନି ଜାଳେ ପରଜା ଯୁବକ, ନିଆଁ ଝୁଲାପଟ

ମଣ୍ଡଳାକୃତି ସମବେତ ନୃତ୍ୟ ଓ ବାଦ୍ୟ ବାଦ୍‌ନ କରି ଘୂରି ବୁଲନ୍ତି ଆବାଳ ବୃଦ୍ଧ ବନିତା ପରଜା ଗ୍ରାମବାସୀ । ଏକକାଳୀନ ରାତି ରାତି ଧରି ଅଗ୍ନି ଉତ୍ସବରେ ଚାଲି ଥାଏ ସମବେତ ନୃତ୍ୟ, ଗୀତ, ବାଦ୍ୟ ସ୍ତୁତି, ସ୍ତବ । ଏମିତିଚାଲେ ଦୁଇତିନି ରାତି । ପରବ ସମାପ୍ତ ହେବା ପରଦିନ ହୋଲିଖେଳ ଭଳି ହୁଏ ରଙ୍ଗ ଖେଳ, ଧୂଳି, ଓ ହଳଦୀ ଜଳରେ ରଙ୍ଗ ଖେଳେ ମଣିଷ, ମାଟି ଖେଳେ ଭୂମିପୁଅ ପରଜା ।

ପରଜା ଝିଅମାନେ ଦଳ ଦଳ ହୋଇ ଧାନ, ଚାଉଳ, ଅର୍ଥ ସଂଗ୍ରହ କରନ୍ତି, ଘର ଘର ବୁଲି, ଗୀତ ଗାଉଥାନ୍ତି—'ସୀତା କନିଆଁ ବଡ଼ ହୋଇଲା ..' ଆଦି । ଚଇତ ମାସର ଗ୍ରୀଷ୍ମରେ ରାସ୍ତା ଉପରେ ଖୋଲା ଆକାଶ ତଳେ ଠିଆ ହୋଇ ପାଦର ମାଗନ୍ତି ଲୋକଙ୍କୁ । ଏଇସବୁ ଚଇତି ପର୍ବ ଅମାବାସ୍ୟା ପରେ କିମ୍ବା ବୈଶାଖ ମାସରେ ଆମ ଉତ୍କଳୀୟ ଧାରାରେ ଅକ୍ଷୟ ତୃତୀୟା ଦିନ ବୀଜ ବପନ କଲା ଭଳି ସେମାନେ ମଧ୍ୟ ବିହନପକା ପର୍ବ ପାଳନ କରନ୍ତି, ତା' ନାଆଁ 'ବିଜ ପୁଟୁଣୀ' । ନନ୍ଦପୁରରେ ଏକ ପାହାଡ଼ ଶିଖରେ ଥିବା ଏକ ପ୍ରଶସ୍ତ ଚଉଡ଼ା ପଥର ଉପରେ ଚାଉଳ ବିହନ ବୁଣାଯାଏ, ଆଶ୍ଚର୍ଯ୍ୟଜନକ ଭାବେ ସେଥିରୁ ଅଙ୍କୁର ଉଦଗମ ହେଉଥିବା କଥା କୁହାଯାଏ । କହନ୍ତି ଧାନ ବି ଏକେଣ୍ଡା ଧରେ, ପାକଳ ହୁଏ । ସେମାନେ ପ୍ରବଳ ଶୀତ ମାଘ ମାସରେ କରନ୍ତି ମାଟି ଦେବତାଙ୍କ ପୂଜା, ଦେବତାଙ୍କ ନାମ—'ଧରମ ପେନୁ' । ତା' ବ୍ୟତୀତ ସେମାନଙ୍କର ଅଛି ଲଠି ଦେବତା (ଧୂଳା), ଡୋଲି ଦେବତା (ଚୌକି), ଭୀମା ଦେବତା ନାମରେ ବଡ଼ ବଡ଼ କାଠ ଖୁଣ୍ଟର ଦୁଇଟି ଦିଅଁ । ପ୍ରତି ତିନିବର୍ଷରେ ଭୀମା ଦେବତାଙ୍କ ଉତ୍ସବ ହୁଏ । ତା'ର ନା ବାଲିଯାତ୍ରା ।

ମହିଳା ପୂଜାରଣୀଙ୍କ ସଜ୍ଞା ଗୁରୁମାଇଁ । ସେ ପର୍ବ ଉତ୍ସବରେ କାଳିସି ଲାଗେ, ଚାଙ୍ଗୁ ବାଇଦର ତାଳେ ତାଳେ ବହେ ନାଚିଯାଏ । ପୁରୁଷ ପୂଜକଙ୍କ ନାମ 'ସିରା' । ବର୍ଷକେ ଥରେ ସେ ଉତ୍ସବରେ ମନାଏ—ଡୋଲି ଯାତ୍ରା, ସିରାଲଠି ଯାତ୍ରା ଜ୍ୟୋତିଷ ଓ ପୁରୋହିତଙ୍କ ନାମ 'ଦିଶାରୀ' । ସେ ବୀଜବପନ, ବାହାଘର ଓ ଯାତ୍ରା ଉତ୍ସବର 'ଯୋଗ' ନିର୍ଦ୍ଧାରଣ କରନ୍ତି ।

ପରଜା ଲଳନାମାନେ ହାତରେ ବିଭିନ୍ନ ଠାକୁର, ପଶୁ ପକ୍ଷୀଙ୍କ ଚିହ୍ନ ଖୁଣ୍ଟାଇବାକୁ ଭଲ ପାଆନ୍ତି, ତା'ର ନାମ—ଖୁଦାନଚିନା । ଏହା ଖୁଣ୍ଟାଇ କଳା ଚିହ୍ନ ଓ ଠାକୁର ଚିହ୍ନ ଥିଲେ ମଲା ପରେ ଯମ ଦଣ୍ଡ ଦିଏ ନାହିଁ ବୋଲି ସେମାନଙ୍କର ବିଶ୍ୱାସ ।

ପରଜା ଜାତି ଧାନ ଉତ୍ପାଦନ କରେ କିନ୍ତୁ ଭାତରେ ବଳ ହୁଏ ନାହିଁ ବୋଲି ସେ ଖାଏ ଡେକ୍‌ଚି ଡେକ୍‌ଚି ମାଣ୍ଡିଆ ଜାଉ, ଜଅର ପେଜ । ତରକାରି ବେଶୀ ଗ୍ରହଣ ନାହିଁ, ନ ମିଳିଲେ ମଧ୍ୟ ଦୁଃଖ ନାହିଁ, ଜାଉ ସହ କଞ୍ଚା ଲୁଣ ଓ ଗୁଡ଼ ଛଅଭା ମୋଟା କଞ୍ଚାଲଙ୍କା, ଅଭାବ ପକ୍ଷେ ସୁଖିଲାମରିଚ କାମୁଡ଼ି ଗୁଡ଼ୁ ପାଞ୍ଚ ଲିଟର ମାଣ୍ଡିଆ ଜାଉ ଢୋକି ଦିଏ ।

ପରଜା'ର ଦେହରେ ଥିଲା ଶ୍ରମ, ଦୁଃସାହସଭରା ପ୍ରଚୁର ବଳ, କୁଇଣ୍ଟାଲ କୁଇଣ୍ଟାଲ ଦ୍ରବ୍ୟର ଭାର ବୋହି ନେଇ ଯାଉଥିଲା ୫୦ କିଲୋମିଟର ଦୂରକୁ । କ୍ଷଣକେ ଚଢ଼ି ଯାଉଥିଲା ଗଗନଚୁମ୍ବୀ ପାହାଡ଼ ଶିଖରକୁ, କନ୍ଦା ଖୋଳି, କୋଳି ତୋଳି ଆଣୁଥିଲା ବହୁତ ବହୁତ । ନିମିଷକେ ଉଚ୍ଚ ବୃକ୍ଷ ଶିଖରକୁ ଚଢ଼ିଯାଇ ମସାଲ ଦେଖାଇ 'ବାଘ ମହୁ' ଉତାରୁଥିଲା, ଟିଣ ଟିଣ ଉତାର ଆଣୁଥିଲା ଖଣ୍ଟି ମହୁ ।

ସ୍ୱାଧୀନତା ଆସି ସଭ୍ୟତାର କାଉଁରି କାଠି ଛୁଇଁଦେଲା ତା' ଦେହରେ । ଏ ବଳିଷ୍ଠ ଶ୍ରମିକ ଜାତି ଜୀବନରେ ଆସିଲା ଘୋର ପରିବର୍ତ୍ତନ । ବାବୁମାନେ ମାଗଣାରେ ତା'କୁ କିଛି ଟଙ୍କା ଦେଲେ । ସେ କର୍ମକୁଣ୍ଠ, ଆଳସ୍ୟ, ପ୍ରବଞ୍ଚନା ଶିଖିବାକୁ ଆରମ୍ଭ କଲା । ପର୍ବତ ଭୂମିପୁତ୍ର ସିଂହ ଶାବକର ଜାତି । ମାଣ୍ଡିଆ ଚାଷ ବଦଳରେ ସେ କଲା ଲଙ୍କା ଓ ବିନ୍‌ସ୍‌ ଚାଷ, ନିଶା ଅଧିକ ସେବନ କଲା । ମାଣ୍ଡିଆ ଜାଉ ବଦଳରେ ସେ ଖାଇଲା ଭାତ, ପିଇଲା ହୋଟେଲର ନାଲି ଚାହା ତା'ର ବଳ ହୋଇଗଲା କ୍ଷୀଣ ।

ପାହାଡ଼ ଉପରେ କନ୍ଦା, କାଙ୍କଡ଼ ହେଲା ଦୁଃସ୍ୱପ୍ନ । ବଳ, ସାହାସ ଉଭ୍‌ରିଗଲା ଦେହରୁ, ଆଉ ପାହାଡ଼ ଚଢ଼ିବ କିମିତି ଓ କାହିଁକି ? ଗଛ, ବଣ ସମାପ୍ତ କରିଦିଆଗଲା, ଗଛଚଢ଼ିବ କିମିତି, ବାଘମହୁ କାହିଁ ? କଳକାରଖାନାକୁ ଗଲା ମଜୁରି ପାଇଁ, ଶୋଷଣର ଶିକାର ହେଲା ।

ପରଜାର ସବୁ ବିଭବ ନଉନ ହୋଇଯିବା ସତ୍ତ୍ୱେ ସେ ଗୌରବ ବୃଦ୍ଧି କରିଛି ତା'ର 'ରଞ୍ଜାଡ଼' ନୃତ୍ୟରେ । ପରଜା ଗୀତ—ସଭ୍ୟ ସିନେମା ପ୍ରେମୀ ମଣିଷର ଗଳାରେ ବାଜୁଥିବା କ୍ୟାସେଟରେ । ଏ ଜାତିର କୃଷି, କୃଷ୍ଟି ଓ ବପୁବନ୍ତ ସ୍ୱାସ୍ଥ୍ୟ ପାଇଁ ସରକାର କିଛି ଉନ୍ନତର ସୁବ୍ୟବସ୍ଥା କରିବେ କି ? ଉଚ୍ଚ ଶିକ୍ଷା ଚିନ୍ତା କରିବେ କି ? [ସୌଜନ୍ୟ—ପ୍ରଜାତନ୍ତ୍ର ସାଃ ] ।

— ● —

ନବରଙ୍ଗପୁର ଜିଲ୍ଲାରେ ବହୁ ଆଦିବାସୀ ଜନଜାତି ଓ ଉପଜାତି ରହିଛନ୍ତି । ସେମାନଙ୍କ ମଧ୍ୟରୁ ଅନୁପାତକୁ ଦେଖିଲେରେ ଗଣ୍ଡ, ଭତ୍ରା ପ୍ରମୁଖ ଜାତିଙ୍କ ସଂଖ୍ୟା ଅଧିକ । ବିଭିନ୍ନ ଜାତିର ଭାଷା ଭିନ୍ନଭିନ୍ନ ହେଲେ ମଧ୍ୟ ଅନେକ ସାମଞ୍ଜସ୍ୟ ରହିଛି । ଜଣେ ଅଧେ ଆଦିବାସୀ ଶିକ୍ଷାର୍ଜନ କରି ନିଜ ଭାଷାରେ କବିତା ଲେଖିବା, ଗୀତାଦିର ସଂକଳନ କରିବା ଆଦି କାର୍ଯ୍ୟରେ ପ୍ରବୃତ୍ତ ହେଲେଣି ।

ତେବେ ଏହି ଆଦିବାସୀ ଭାଷାମାନଙ୍କର ଅନେକ ଶବ୍ଦ ଯେ ମୂଳ ଓଡ଼ିଆ ଶବ୍ଦ ଟିକିଏ ଧୀର ଚିତ୍ତରେ ଅନୁଶୀଳନ କଲେ ତାହା ବେଶ୍ ବୁଝିହେବ । ପୁନଶ୍ଚ କେତେକ ଶବ୍ଦ ସଂସ୍କୃତ ଭାଷାରୁ ଆଗତ, ଯଥା—ଦାରୁ । ଦାରୁର ଅର୍ଥ କାଠ । ସେହିଭଳି ଦଶାସ୍ତ—ପୂରବସ୍ୱିତ, ଏହା ଅର୍ଥ ଦିଗଦ୍ରଷ୍ଟା । ହିନ୍ଦୀଭାଷାର ଶବ୍ଦ ମଧ୍ୟ ସେମାନେ ନିତ୍ୟ ବ୍ୟବହାର କରିଥାନ୍ତି । ଯେମିତି ପଶିନା—ଝାଳ, ମୁରଝିଗଲା—ଝାଉଁଳିଗଲା (ଶୁଖିଗଲା) । ଥାକ୍ ଲିବେ—ଥକିଗଲି (ଥକ୍ ଗିଆ) ଇତ୍ୟାଦି । ତେଲୁଗୁ ଭାଷା 'ଘଟ୍ଟୁ' (ପାଟି କରିବା) ଭଳି କେତେକ ଶବ୍ଦ ମଧ୍ୟ ବ୍ୟବହାର କରନ୍ତି । ଭମିଣୀ ପଞ୍ଚାୟତର ଜଣେ ଆଦିବାସୀ ଭାଷାର ପ୍ରଣେତାଙ୍କ ଏକ କବିତା-

ଉଟା ଉଟାରେ ଧାଙ୍ଗଡ଼ା ମନେ ଉଡ଼ି ଡାକ୍ ସି ଆଚେ,
ଉଟାରେ ବଣ୍ଡ୍ କୁ ଉଟାରେ ଶୁନ୍ଧ୍ ଉଜର ହେଇସି ଆଚେ ।
ପୂଜାଶି ଘରର ବାଦିଆ ଗଞ୍ଜା କେକେର୍ କୋଁ ଡାକେ,
ମାଡ଼ର ଉହା ମନ ଖାଇରତି ଭୂକେ ଶୋଇଲାର୍ ଭୁକେ ।
ଗାଁଟିଆଘର ଧୋବଲି ଗାଏ ଜାଧୁ ଛୁଡ଼ାଇସି ଆଚେ,
ବୁଟ୍ଟୁରୀ ପିଲାକେ ପାନା ଦେବ କେ ଧକଲ୍ ହେଉସି ଆଚେ ।
ଚଲନ୍ ବୁଆର ବାଡ଼୍ନି ଧରିଲି ବାଡ଼ାଇବାର କାଜେ,
ମେଛା ବେଧାଣେ ମୁଣ୍ଡ୍ କେ ଡ଼ାପ୍ଲି ଲଜ ମଉତର କାଜେ ।
କାନ୍ଦାଗୁଡ଼ିଆମା କଟାଶାଲେ ଗଲା ଗୋବର ଛୁଟନା ହାତେ,
ପରୁର ଲଗ୍ନି କୈଁପଟୋକା ଉଜର ହେଲାକ ସତେ ?
କମ୍ଟୁ, କୈଁଙ୍କ, ଶୁନ୍ଧିଟେକା ସବୁକର ମୁଣ୍ଡେ ହାଣ୍ଡି,
ଭୁଲ୍ ସା ଉନ୍ଦୀ ଘଟ୍ଟୁ ଡ଼ାକଲନ ବାଟ ଦିଆଟୋ ହଣ୍ଡି ।
ଉନ୍ଦୀ, ମାଇଜ, ଟକି କଲ୍ ଚୁଆର ଥାନେ,
କାଏ କାଏ କାତାଲମାଇ ଦେଲଇ ମନ କେ ନାଇଁମାନେ ।

ଝିଣ୍ ଝିଣ୍ କରି ଘାଣ୍ଟି ମାରଲେଣି ଇସ୍କୁଲିଆମାନେ,
ତନ୍ଦ୍ରା ହୋଇ ଘଡ଼ିଏ ଉଲଟାଏ ବାକି ଜସ୍ଟ୍ୟାମାନେ ।
ଗୋବର ଛୁଡ଼ା ଢାଳିଲ ଲଗଲ ଉମରକୋଟିଆଣୀ,
ଗିନାବଟକ ମାଞ୍ଜି ଲଗ୍ଲାଏ ଗୁସା କାଣିଆଣୀ,
ଭୁତା କରବା ବାଟେ ବାଗ୍ପଗ ବଉଗି କାରିଆଣୀ ।
କଲ୍ୟା, ଧଲ୍ୟା ଗେଲ୍ ଦୁଇକେ ଛମର ହଳେ ବାନ୍ଧୁ,
କପିଆ, ମଣ୍ଡିଆ, ଦୁଇ ବଇଲ୍କେ ଗୁଚ ଲଙ୍ଗ୍ଲେ ଫାନ୍ଦୁ ।
ଖରି ବରଷା ଶୀତ୍ ଖାକରି କାକେନାଇଁ ଆମେ ମାନୁ,
ଉଟାରେ ଉଟାରେ ନାଙ୍ଗରଆମାନେ ପିଆନର କଡାମାନ ।" ଇତ୍ୟାଦି ।

('ଉଜର ହେଲି' କୃପା କନ୍ଦପାନ, ବାଟିବେଡ଼ା )

ଏହି ଗୀତ କବିତା'ର ଭାବାର୍ଥ ହେଲ—"ଉଠ ଉଠରେ ଯୁବକମାନେ ବୃଦ୍ଧା ଓ କୁଛନ୍ତି, ଉଠ ଦେଖ୍ବ, ଉଠରେ ଶୁକ୍ ଉଜ୍ଜଳ ହୋଇ ଆସୁଛି । ଚନ୍ଦ୍ରାସ୍ତ ଘର ଯୁଦ୍ଧ-କୁକୁଡ଼ା ଚଞ୍ଚୁ 'କୋକୋକୋରେ କାଁ' ଡ଼ାକୁଛି । ମାତାଲ ବୁଢ଼ା ଦେ ମଦ ପିଇ ଭୋକରେ ଶୋଇଛି । ଗାଉଁଟିଆ ଘର ଧୋବଲି ଗାଈ ଦୋ ଛୁଟ୍ଟାଉଛି, ବାଛୁରି ଛୁଆକୁ ଦୁଧ ଦେବା ପାଇଁ ବିକଳ ହେଉଛି । ଚଲନ (ଗ୍ରାମରକ୍ଷୀ) ଘର ବୋହୂ ଝାଡ଼ୁ ଧରି ଦୁଆର ଓଳଉଛି । ଅନ୍ୟଜଣେ ନୂଆବହୂ ଲାଜରେ ଓଢ଼ଣା ଟାଣୁଛି, କନ୍ଦାଗୁଡ଼ା ଗାଁରୁ ଆସିଥିବା ବୋହୂ ଗୋବର ଟୋକେଇ ଧରି ଗୁହା-ଳକୁ ଯାଉଛି । ସଜେ କ'ଣ ଉଜ୍ଜଳ ହେଲାଣି ନା ନାହିଁ ବୋଲି ବୈଦେହୀ ନାମ୍ନୀ ଝିଅ ଦେଖୁଛି ।

କମଳା, ବୈଦେହୀ, ଶୁକ୍ରୀ ସମସ୍ତ ଝିଅଙ୍କ ମଧ୍ୟରେ ପାଣିହାଣ୍ଡି, ତୁଳସୀବୁଢ଼ୀ ବାଟ ଗୁଡ଼ାରେ ବଣ୍ଡମାନେ ତୋଳି ପାଟି କରୁଛି । ବୃଦ୍ଧ' ଯୁବକ ଓ ଝିଅମାନେ କାଳକୁଁ କଳଙ୍କରେ କ'ଣ ସବୁ କଥା କହୁଥାଇ ଦେଇଛନ୍ତି ଯେ କାହା ମନକୁ ପାଉନାହିଁ (ଭଲ ଲାଗୁନାହିଁ) । ସ୍କୁଲର କର୍ମଚାରୀମାନେ ଝିଣିଝିଣି କରି ଘଣ୍ଟା ବାଡ଼େଇଲେଣି, ଅଳସ, ନିଦରେ ଶୋଇ ଅଳଙ୍କୁଆମାନେ ଏବେ କଡ଼ଲେଉଟାଇ ଶୁଅନ୍ତି ଛନ୍ତି । ଅମରକୋଟଠାରୁ ଏ'ଠାକୁ ଆସିଥିବା ବୋହୂ ଅଗଣାରେ ଗୋବର ପାଣି ଛେରା କୋଇବାକୁ ଗଲ । ବଡବାରିଆଣୀ ନାମକ ମହିଳାଟି ଡାଟିଆ ଆଦି ବାସନ ମାଜିବାରେ ଲଗିଛି, ଅନ୍ୟଜଣେ ସ୍ତ୍ରୀଲୋକ କୁଳି

ମଜୁରି କରିବାକୁ ଯାଉଛନ୍ତି । ଏଥିର କଳା, ଧଳା ବଳଦ ଦୁଇଟିକୁ ହଳ ଯୋଚିବା ତାଙ୍କ ଆଗରେ ଜୁଆଳି ବାନ୍ଧିବା; ନାଳିଆ ଓ ନାଗରଙ୍ଗ (ଧାନଶ୍ରେଣୀର ବେଳଧ ହଳକୁ ଛେଚରେ ନେବା, ଖର ବର୍ଷା ଶୀତ କାଳର ଅନେକାହାକୁ ଭୟ କରୁନା, ବାଟର ଦେଉଆରେ, ଉଚ ଉଠାଣିରେ ଦିଧା ଓ ଧୀର ଭୃକାଳ ବେଳେ କନ୍ତୁ ଆମ ଦିଆଣା ବା ବୁଦ୍ଧିମାନ ଲୋକର ପରାମର୍ଶ ଶୁଣିଲେ ତାହା ମାନି କାମ କରୁ ।

ଏହି 'ଜଙ୍ଗଲ ଦେଲ' ନାମକ ଗୀତଟି ପ୍ରଭାତ କାଳୀନ ବର୍ଣ୍ଣନା, ଏଥିରେ ଏକ ଗ୍ରାମ୍ୟ ଜୀବନର ଉଷା—ମୁହୂର୍ତ୍ତକୁ ନିଖୁଣ ଭାବରେ ପରିବେଷଣ କରାଯାଇଛି ।

ଏଥିରେ ପ୍ରୟୋଗ ହୋଇଥିବା ଅଧିକାଂଶ ଶବ୍ଦ ଓଡ଼ିଶାର ଅପଭ୍ରଂଶ ବା ମୌଳିକ ଭାବରେ ଓଡ଼ିଆ । ଯଥା.- ଉଠାରେ—ଉଠାରେ, ଉକୁର୍—ଉତ୍କଳ, ମାତିର—ମାତାଲ, ଗାଏ—ଗାଈ, ଯାନା—ଯେଉଁ ମାନେ, ବେଁଧ—ବେଁଧେଇ, କାତା—କଥା, ମାଙ୍ଗିଗଲା—ମାଗିଲଟିଛୁ, ବାର୍—ବାଢ଼, କଲ୍ୟା, ଧଲ୍ୟା—କଳା, ଧଳା, ବଏଲ୍—ବଳଦ, ଖାକର—କାକର ଇତ୍ୟାଦି । ନିରୀକ୍ଷଣ ଓ ଅନୁଶୀଳନ ସହ ଅର୍ଥ ହୃଦୟଙ୍ଗମ କଲେ ଏଥିରୁ ଅନେକାଂଶ ଓଡ଼ିଆ ଶବ୍ଦ ବୋଲି ଜାଣିହେବ ।

ଆଉ କେତେକ ଶବ୍ଦ ନିଆରା ଆଦିବାସୀ ଭାଷା । ତାହାର ଶବ୍ଦାର୍ଥ :- ବୁଟୁର—ବାଛୁରୀ, ତାଓ୍ୱା—ପଘା, ଡ଼ାପ୍‌ଲ ଯୋଡ଼ାଇ ଦେଲ୍, କଠାଗାଲେ—ଗୃହାଳ (ଖଳା), ଚୁଆ—କୁଅଁ, ବାଗ୍‌ପର—ଧୂରନ୍ଧର, କାଚୁ ଛୁଡ଼ଲ—ଅନ୍ତଃସ୍ତ୍ରୀ ହେଲ୍, ନାଙ୍ଗରିଆ—ହଳିଆ ଇତ୍ୟାଦି ।

ଏହି ଗୀତରେ ନଥିବା ଉଦାହରଣ ସ୍ୱରୂପ ଅନ୍ୟ କେତୋଟି ଆଦିବାସୀ ଭାଷାର ମୌଳିକ ଶବ୍ଦ ହେଲା :- ସାଙ୍ଗଲ୍—କହିଲା, ମୁଲ୍ଇ ଦେଉ—ଆରମ୍ଭ କରିଦେବା, ଲେକା—ଶ୍ରେଷ୍ଠଟୋକା, କମ୍ୟା—ଶିଶୁ ହଳିଆ (ଶ୍ରମିକ), ଗୁନୁ—ବନରେ, ବତା—ବ୍ୟକ୍ତି, ଅନକର—ଅଧିକ, ବାଡ଼ଙ୍ଗା—ଝାଡ଼ୁ, ଶାର୍-ତରକାରୀ ପ୍ରଭୃତି ।

ଆଦିବାସୀ ଜନସମ୍ପ୍ରଦାୟରେ ଗାନ୍ଧର୍ବ ବିବାହ ଭଳି 'ଉଦୁଲିଆ' ନାମକ ଏକ ପ୍ରକାର ବିବାହ ପଦ୍ଧତି ରହିଛି । ପିତାମାତାଙ୍କ ଅଗୋଚରରେ ବର ଓ

କନ୍ୟା କ ହାତକୁ ନ ଜଣାଇ ବିବାହ ସମ୍ବନ୍ଧ ଆଗରୁ ଠିକ କରିଥାନ୍ତି କିମ୍ବା ହାଟବାଟ, ବଜାର ଯାତ୍ରା ଉତ୍ସବରେ ଯୁବକ ଓ ଯୁବତୀ ଦେଖାହୋଇ ହଠାତ୍ ମନ ଦେଣାନେଣ ହେଲେ ଜଣେ ଯୁବକ ଜଣେ ଯୁବତୀକୁ ଅଗୃନକ ଟାଣି ନିଜ ଘରକୁ ନେଇଯାଏ । ଏ ସମ୍ବାଦ ଝିଅର ପିତାମାତା ଶୁଣି, ବନ୍ଧୁକୁଟୁମ୍ବଙ୍କ ସହ ବର-ଗୃହକୁ ଯାଆନ୍ତି ଏବଂ ଜରିମାନା ସ୍ୱରୂପ କିଛି ଟଙ୍କା ଅସୁଲ କଲପରେ ଝିଅକୁ ଛାଡ଼ି ଫେରି ଆସନ୍ତି । ଏହାକୁ 'ଉଦୁଲିଆ' ବିବାହ କୁହାଯାଏ ।

ସେହି ଅସୁଲ ଟଙ୍କାକୁ 'ଝୋଲ୍' ଟଙ୍କା କୁହାଯାଏ । ସେହି ପ୍ରାପ୍ତଧନରୁ ଅର୍ଦ୍ଧେକ ପିତା ରଖନ୍ତି ଏବଂ ଅର୍ଦ୍ଧାଧିକତର ଭୋଜିଭାତ କରି ବନ୍ଧୁ କୁଟୁମ୍ବଙ୍କୁ ଖୁଆନ୍ତି । ବର ଟଙ୍କା ଦେଇ ନ ପାରିଲେ କନ୍ୟାପିତା ଝିଅକୁ ଫେରାଇ ଆଣନ୍ତି । ଝିଅ ନିଜର ସ୍ୱାଧୀନ ଇଚ୍ଛାରେ ବର ବରଣ କରି ଗ୍ଲଲଗଲେ ପରିବାରର କେହି ଏବଂ ପିତା, ମାତା ମଧ୍ୟ ଦୁଃଖ କରନ୍ତି ନାହିଁ । କାରଣ ବିବାହର ବଶାସ୍ତ୍ରୀ ଯୋଗରେ କନ୍ୟାଦାନ ବ୍ୟୟଭାର ଏହା ଦ୍ୱିଗୁଣ ହୁଏ । ଏ ସମ୍ପର୍କରେ ଏକ ଗୀତ; ଝିଅର ଜନକ ତା'ର ଏକମାତ୍ର ଦୁହିତା 'ଉଦୁଲିଆ' ପଳାଇବାରୁ କହୁଛି—

କେତେ କାତା କରୁ ହାଏ ଶୁନି ଟଙ୍କା, ମାଙ୍ଗଲୁ ମୁନୁଷ୍‌କେ ଗଲୁ ଉଟି ।
ଜଲପାଡ଼ ଦେଇରେଲୁ ବିଆଲି ଜନେ, ମନ୍ଦ୍ ମୁରେ ଖାଇରେଲୁ ପିଆନ୍ ଆମେ ।
ଫଗୁନ୍ ମାସେ ବିହା ହେବାର କାଜେ, ଶୁନ ଶୁନି ଅପୁା ବଡ କାନ୍ଦ୍ ସି ଆଚେ ।
ଟଙ୍କା ଗଣି ସାଙ୍ଗେ ମଣ୍ଡେଇ ଗାଲ୍, ସବୁ ଦିହୁଡ଼୍‌ଲାଏ ଲୋକ କେନେ ଗଲ ?
ବେଟିକେ କୋନ୍ ନେଲୁ ସତେ କ ଚୋକ, ରୁଜୁ ଆମେ ଦେଖ୍‌ଲୁ ତୋ'ର ଲୋକ ।
ବିହାକାଜେ ବୁଲାବତା ଜୁଆର ନେଲ୍, ଏବେ ଲୋକ ତା'ର ସବୁ ସାରୁଦିଲ୍ ।
ବେଟି ହେଇ ରଲୁ ଆମର ଘରେ, ବୁଆସ୍ତୀ ହେଲ ଶୁନି ପର୍ ଘରେ ।
ନ ଏକାନ୍, ନାଏକାନ୍ ଶୁନି ଅପୁା, ଖାନ୍ଦ କଣ୍ଡା ଚୁଡ଼ ହେବସନ୍‌କ ବାପୁା ।
ଶୁନି ମୋର ଲୋକ ଗୋଟିକ୍ ବେଟି, ହାପୁରେ ବିଧାତା ଭୁଇଏକା ପାକ ।
( କୃପା ଦାନ )

ଏହି 'ଶୁନ୍ନୀମୋର ଗୋଟିକ ବେଟି ଶୀର୍ଷକ ଗୀତର ଭାବାର୍ଥ ହେଲା— ଯିଏ ଯେଉଁ ବାରେ ଜନ୍ମ ହୁଏ, ବାର ଅନୁସାରେ ଆଦିବାସୀମାନେ ପୁତ୍ର, କନ୍ୟାଙ୍କ

ନାମକରଣ କରନ୍ତି, ଯଥା: ରଇବାରୁ, ମଙ୍ଗଳବାରୀ, ବୁଧେଇ, ସୋମ୍ବାରୁ, ଶୁକ୍ରି । ଜନୈକ ପିତାର ଶୁକ୍ରି ନାମ୍ନୀ ଝିଅ ଉଦୁଲିଆ ଚାଲିଗଲା । ବାପ କହୁଛି—

'ଶୁକ୍ରି ଟୋକି କେତେ ବଡ଼ କଥା କଲା, ସେ ମାଗିଥିବା ବରକୁ ହିଁ ବିବାହ ଆଗରୁ ଚାଲିଗଲା । ଦିଆଳି—ମାର୍ଗଶୀର (ବା କାର୍ତ୍ତିକ ମଧ୍ୟ) ମାସରେ ଆଦିବାସୀ ପ୍ରଥା ଅନୁସାରେ ତା' ଉପରେ ପାଣି (ଜଳାପାଣି କହନ୍ତି) ଢାଳି ବାକ୍ ଦତ୍ତ କରିଥିଲୁ । ଫଗୁଣ ମାସରେ ବିବାହ ଠିକ୍ ହୋଇଥିଲା, ଝିଅ ଏ କଥା ଜାଣି କାନ୍ଦୁଥିଲା । ସେ ଅନ୍ୟ ଝିଅମାନଙ୍କ ସହ ମିଶି 'ମନ୍ଦ୍ରେଇ' ଯାତ୍ରା (ମାଘମାସ) ଦେଖି ଯାଇଥିଲା, ସମସ୍ତ ବାହୁଡ଼ି ଆସିଲେ, ସେ କୁଆଡ଼େ ଗଲା ? ଝିଅକୁ କିଏ ନେଲା ? ଆମେ ପ୍ରମାଣ ପାଇଲୁଣି । ହଁ ହେଲା, ତୁ ଆମ ଘରେ ଝିଅ ହୋଇଥିଲୁ । (ସବୁଦିନ ଆଉ ରହନ୍ତୁ କି ?) ଏବେ ପରଘର ଯାଇ ବୋହୂ ହେଲୁ । ଶୁକ୍ରି ମାଁ ଲୋ ! ତୁ ଆଉ କାନ୍ଦନା, କାନ୍ଦନା ଖାଇବା ପିଇବା ଛାଡି ବାୟାଣୀ ହେବୁକି ? ପାଗୋଳୀ ପରି ହୁଅନା ତୁ ମୋର ଗୋଟିଏ ବୋଲି ଝିଅ, ଏପରି ହେଲା ! ହେ ବିଧାତା ! ତୁ ଏକା ସାକ୍ଷୀ ।

ଅବିଭକ୍ତ କୋରାପୁଟ ଜିଲ୍ଲାର ଆଦିବାସୀମାନଙ୍କ ମଧ୍ୟରେ ଏହିପରି ଅନେକ ଭାଷା, ଅନେକ ଶବ୍ଦ, ପ୍ରଥା, ପ୍ରଚଳନ ଥିଲେ ମଧ୍ୟ ସେମାନେ ଓଡ଼ିଆ ଭାଷା ଓ ଲିପି ଶିକ୍ଷା କରନ୍ତି, ଉତ୍କଳର ସଂସ୍କୃତି ଓ ପରବବାଣୀ, ପରମ୍ପରାକୁ ମାନି ଚଳନ୍ତି ଏବଂ ନିଜକୁ ଓଡ଼ିଆ ଭାବେ ପରିଚିତ କରନ୍ତି । ଦେଶ ପାଇଁ, ଜାତି ପାଇଁ ଜୀବନ ମଧ୍ୟ ଦିଅନ୍ତି । [ ସୌଜନ୍ୟ—ପ୍ରଜାତନ୍ତ୍ର ସା: ] ।



ଅବିଭକ୍ତ କୋରାପୁଟ ଜିଲ୍ଲା ତଥା ଅଧୁନାତନ ନବରଙ୍ଗପୁର ଜିଲ୍ଲାର ଅମରକୋଟ ଅଞ୍ଚଳରେ ଭତରା ଜାତିର ଆଦିବାସୀମାନଙ୍କ ବହୁ ବସତି, ସେଥି-ମଧ୍ୟରୁ କଡ଼ଭରଣ୍ଡି ଗୋଟିଏ ବଡ଼ଗାଁ । ସେଇଠି ସ୍ୱର୍ଗତ କଗା ପୂଜାରୀଙ୍କ ଘର । ବୃଦ୍ଧ ବୟସରେ ମଧ୍ୟ ସେ ମହାଭାରତୀୟ ସ୍ୱାଧୀନତା ସଂଗ୍ରାମରେ ସମର କରି-ଥିଲେ ମଧ୍ୟମ ପାଣ୍ଡବ ବୀର ଅର୍ଜୁନଙ୍କ ପରି, ସଂଗ୍ରାମର ବ୍ୟସ୍ତ ଭାର ବହନ କରିଥିଲେ ଦାମ୍ଭକଣ୍ଠି ଭଳି ।

ସେହି ଗାଁର ୮୫ ବର୍ଷ ବୟସ୍କ ବୃଦ୍ଧ ବୁଦ୍‌ସନ ସମରଥ କହନ୍ତି— ବଗା ପୂଜାରୀଙ୍କ ପୂର୍ବପୁରୁଷ କେତେ ଶହ ବର୍ଷ ଅତୀତରେ ଏଠିକି ଆସିଥିଲେ ଓଡ଼ିଶାର ଦକ୍ଷିଣାଞ୍ଚଳ ବସ୍ତର ଜିଲ୍ଲା ତଥା ସମ୍ପ୍ରତି ମଧ୍ୟପ୍ରଦେଶରେ ଥିବା ଦନ୍ତେ-ୱାଡ଼ାର ଭୈରବଗଡ଼ ଅଞ୍ଚଳରୁ । ବଡ଼ଭରଣ୍ଡିରେ ସ୍ୱର୍ଗତ ବଗା ଜନ୍ମ ଗ୍ରହଣ କରିଥିଲେ ୧୮୮୫ ମସିହାରେ ଏବଂ ସଂଗ୍ରାମୀ ବନ୍ଦୀଭାବେ ଜନ ଆଗୋଚରରେ ୧୯୪୨ ଫେବୃୟାରୀ ମାସରେ ସେ ମୃତ୍ୟୁବରଣ କଲେ କୋରାପୁଟ ଜିଲ୍ଲା ଜେଲ୍‌ରେ ।

ବଗା ପୂଜାରୀ ଶହୀଦ ହେବା ପୂର୍ବରୁ ସ୍ୱରାଜ ସଂଗ୍ରାମ କାଳରେ କିଭଳି କଷ୍ଟ ସହିଥିଲେ ସେକଥା ପ୍ରତ୍ୟକ୍ଷଦର୍ଶୀ ଜଣେ ନିକଟତମ ବ୍ୟକ୍ତି ଚଟେଡ଼ଇଗୁଡ଼ା ଗ୍ରାମ ନିବାସୀ ଶ୍ରୀ ସମା ଚନ୍ଦ୍ର ୭୫ ବର୍ଷ ବୟସ୍କ ବୃଦ୍ଧ କହନ୍ତି—ସେତେବେଳେ ମୁଁ ଅବିବାହିତ ଥାଏ, ବଡ଼ଭରଣ୍ଡି ଗ୍ରାମରୁ ଏକ କିଲୋମିଟର ଦୂରରେ ଥିବା ସାନ ଭରଣ୍ଡି ଗ୍ରାମର ଭୂଷାରଜ ଗଣ୍ଡ ନାମକ ଜନୈକ ଧନୀ ସାହୁକାର ଘରେ ଗୋତି ଖଟୁଥାଏ । ଜଣେ ପୁଲିସ ହେଡ଼ କନେଷ୍ଟବଲ ଆସି ଜଣେ ବେଠିଆ ଲୋକକୁ ଥାନାରେ କାମ କରିବା ପାଇଁ ମାଗିବାରୁ ସାହୁକାର ମୋତେ ପଠାଇଲା ।

ମୁଁ ପ୍ରତିଦିନ ଅମରକୋଟ ପୁଲିସ ଥାନାକୁ ସନ୍ଧ୍ୟାରେ ଯାଇ ସେଠି ସାରା ରାତି ପ୍ରହରୀ ଦେଉଥିଲି । ଦିନକର ମୁଁ ଦେଖିଛି ସେଠାକୁ ସ୍ୱର୍ଗତ ବଗା ପୂଜାରୀଙ୍କୁ ଗିରଫ କରି ଅଣାଗଲା, ତାହାଙ୍କୁ ତଳେ ଶୁଆଇ ଦିଆଗଲା । ତାଙ୍କ ପିଠି ଉପରେ ସିପାହୀମାନେ ଚଢ଼ି ବୁଟ ଯୋତାରେ ଦଳିଦେଲେ ଏବଂ ଠେଙ୍ଗାଦ୍ୱାରା ପ୍ରହାର କରୁଥିଲେ ।

ପୁଲିସଙ୍କ ପକ୍ଷରୁ କୁହାଗଲା— ତୁ କର୍ମୀ କାମ ଛାଡ଼ିଦେ, ତାହାହେଲେ ଆମେ ତୋ' ପିଠି ଛାଡ଼ିଦେବୁ । ତୁ ବଞ୍ଚିହେଲେ ଏଠୁ ଘରକୁ ଚାଲିଯିବୁ କିନ୍ତୁ ଏତେ କଠିନ ଦଣ୍ଡ ଭୋଗୁଥିବା ସତ୍ତ୍ୱେ ବଗା ପୂଜାରୀ କହୁଥିଲେ— ମୁଁ ସାବରମତୀ ଆଶ୍ରମକୁ ଯାଇ ଗାନ୍ଧିଜୀଙ୍କ ପାଦ ସ୍ପର୍ଶ କରି ଶପଥ କରିଛି, ମୁଁ ମୋର ପ୍ରାଣଗଲେ ମୋର ମତ ବଦଳାଇ ପାରିବି ନାହିଁ । ଯେତେ କଷ୍ଟ ଦେବ ଦେଇପାର ।

ସେ ପ୍ରଥମେ ୧୯୩୭ ମସିହାରେ ପ୍ରତ୍ୟକ୍ଷ ଭାବେ ଜାତୀୟ କଂଗ୍ରେସରେ ଯୋଗଦେଇଥିଲେ । ସେତେବେଳେକୁ ତାଙ୍କ ବୟସ ୫୦ ଟପି ଯାଇଥିଲା । ସେ

୧୯୪୨ରେ ବନ୍ଦୀ ହେବା ପୂର୍ବରୁ ତାଙ୍କ ପୁତ୍ର ସ୍ୱର୍ଗତ ବଳି ପୂଜାରୀଙ୍କୁ କଂଗ୍ରେସର ସ୍ୱେଚ୍ଛା ସେବାରେ ପ୍ରବୃତ୍ତ କରାଇ ସଭ୍ୟ କରାଇଥିଲେ ।

କଂଗ୍ରେସ ଆନ୍ଦୋଳନରେ ନେତୃତ୍ୱ ଦେବା, ଆର୍ଥିକ ସାହାଯ୍ୟ ଦେବା, ଶାସନ ବିରୋଧରେ ଲୋକଙ୍କୁ ପ୍ରବର୍ତ୍ତାଇବା, ବୃକ୍ଷ ଛେଦନ କରିବା ଇତ୍ୟାଦି ରାଜଦ୍ରୋହର ଅଭିଯୋଗ କରି ତାଙ୍କୁ ଗିରଫ କରାଯାଇ ଦଫା ୧୭ (୧) ଡି.ଆର.ପି ଏଲ: ଏ: ଏକ୍ଟର ୧୭୬/୪୨ ଅନୁଯାୟୀ ତାହାଙ୍କୁ ତିରିଶ ଟଙ୍କା ଜୋରିମାନା ଓ ଚାରିମାସ କାରାଦଣ୍ଡ ଦିଆଯାଇଥିଲା । ବନ୍ଦୀଶାଳାର ଅଖାଦ୍ୟ, ଦୂଷିତ ବାତାବରଣ, ଦୁଶ୍ଚିନ୍ତା ତଥା ପଥ୍ୟ ଔଷଧାଦିର ଅଭାବରେ ସେ ବନ୍ଦୀ ମୁକ୍ତହେବା ପାଇଁ ମାତ୍ର ଦୁଇଦିନ ଥିଲା, ତାଙ୍କୁ ମୃତ ବୋଲି ଘୋଷଣା କରାଯାଇଥିଲା, ବନ୍ଧୁ ସଖାଙ୍କୁ ଶେଷ ଦର୍ଶନର ସୁଯୋଗ ଦିଆନଯାଇ କଏଦୀଙ୍କ ଦ୍ୱାରା କୋରାପୁଟ ଜିଲ୍ଲା ଜେଲ ହତା ମଧ୍ୟରେ ତାଙ୍କୁ ସମାଧି ଦିଆଯାଇଥିଲା, ଏହା ୧୯୪୩ ଫେବୃୟାରୀ ୧୧ ତାରିଖର ଘଟଣା ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ସ୍ୱର୍ଗତ ବଳୀ ପୂଜାରୀଙ୍କର ଗୋଟିଏ ପୁତ୍ର ସନ୍ତାନର ଅକାଳ ବିୟୋଗ ଘଟିଥିଲା ୧୯୪୦ ମସିହାରେ । ତାହାର ଦଶାହ କାମରେ ହଜାର ହଜାର ଲୋକଙ୍କୁ ସେ ବସ୍ତ୍ରବଣ୍ଟନ ଓ ଅନ୍ନ ଭୋଜନରେ ଆପ୍ୟାୟିତ କରିଥିଲେ । ବାଧିର ବିଡ଼ମ୍ବନା ତାଙ୍କ ମୃତ୍ୟୁ ମାତ୍ର ଜେଲ କର୍ତ୍ତୃପକ୍ଷ ଓ ଚାରିଜଣ କଏଦୀ ହିଁ ଜାଣିଥିଲେ, ନୀରବ ପରିବେଶରେ ତାଙ୍କର ସତ୍କାର କର୍ମ ସମାହିତ ହୋଇଗଲା । ତାଙ୍କ ଭତରା ଜାତିରେ ଏମିତି କେବେ ଘଟିନଥିଲା ।

୧୯୩୮ ଖ୍ରୀଷ୍ଟାବ୍ଦରେ କୋରାପୁଟ ଜିଲାର ଖଇରପୁଟ ଗ୍ରାମରେ ସ୍ୱର୍ଗତ ଜନନେତା ରାଧାକୃଷ୍ଣ ବିଶ୍ୱାସରାୟଙ୍କ ତତ୍ତ୍ୱାବଧାନରେ ଏକ କର୍ମୀ ତାଲିମ ଅନୁଷ୍ଠାନ ଗଠିତ ହୋଇଥାଏ । ସ୍ୱର୍ଗତ ବଳୀ ପୂଜାରୀ ସେଠାରେ କିଛୁକାଳ ଅବସ୍ଥାନ କରି ତାଲିମ ନେଇଥିଲେ । ଏବଂ ଗ୍ରାମକୁ ଫେରି କାର୍ଯ୍ୟାରମ୍ଭ କରିଦେଇଥିଲେ । ସେ ବଡ଼ ଭରଣ୍ଡିର ମାତା ମାଉଳୀ ଦେବୀଙ୍କ ପୂଜକ, ଜଣେ ବଡ଼ଋଷୀ ଓ ଅବସ୍ଥାପନ୍ନ ଲୋକ ଏବଂ ପରୋପକାରୀ ତଥା ବୈଦ୍ୟଥିବା ଯୋଗୁଁ ସେ ଅଞ୍ଚଳରେ ତାଙ୍କର ବିଶେଷ ଖ୍ୟାତି ଥିଲା, ତେଣୁ ଜନସାଧାରଣଙ୍କ ଉପରେ ତାଙ୍କର ପ୍ରଭାବ ରହିଥିଲା । ତାଙ୍କ ପ୍ରେରଣାରେ ବହୁ ସଂଖ୍ୟକ କର୍ମୀ ଉଠିଥିଲେ, ବହୁତ ବହୁତ ଜନ ସମର୍ଥନ ମିଳିଥିଲା ।

ସ୍ୱର୍ଗତ ପୂର୍ଣ୍ଣାଶ୍ର ୧୯୪୦ ମସିହାରେ ଠକରବାପାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ହୋଇ ଆପଣା ଗ୍ରାମରେ "ଠକରବାପା ଆଶ୍ରମ" ପ୍ରତିଷ୍ଠା ନିମନ୍ତେ ଅଗ୍ରହାନ୍ୱିତ ହେଲେ । ତାଙ୍କୁ ସହାୟତା କଲେ ମହମ୍ମଦ ବାଶା, ସ୍ୱର୍ଗତ ଲକ୍ଷ୍ମୀଚନ୍ଦ୍ର ଦାଶ ପ୍ରମୁଖ ନେତା । ଆଶ୍ରମ ଗଠନ ଓ ପରିଚାଳନା ସମ୍ବନ୍ଧରେ ଗଞ୍ଜାମ ଜିଲାର ତାଲିମପ୍ରାପ୍ତ ୨ ଜଣ ବିଶିଷ୍ଟ କର୍ମୀ ଶ୍ରୀ ଲକ୍ଷ୍ମଣ ସାହୁ ଓ ଶ୍ରୀଧର ରେଡ୍ଡି ଏ ଅଞ୍ଚଳକୁ ଆସି ପରିଦର୍ଶନ ପର୍ଯ୍ୟବେକ୍ଷଣ କଲେ । ଏବଂ ଅନୁକୂଳ ମତଦେଇ ପଷାଳାପ କରିବାରୁ ଜନନେତା ୰ ଲକ୍ଷ୍ମୀନାରାୟଣ ସାହୁ ଆସି ପରିଦର୍ଶନ କଲେ ଏବଂ ସନ୍ତୋଷଜନକ ସ୍ଥିତି ଦେଖି ସୂତ୍ରାରଣ କରିବାକୁ ଅନୁମୋଦନ ମିଳିଲା ।

ଆଶ୍ରମ ନିର୍ମାଣ ନିମନ୍ତେ ଏକ ପ୍ରଶସ୍ତ ଜାଗା ଦେଇ ସ୍ୱର୍ଗତ ବଗା ପୂର୍ଣ୍ଣାଶ୍ର ସମ୍ପୂର୍ଣ୍ଣ ନିଜ ଖର୍ଚ୍ଚରେ ଆଶ୍ରମ ଗୃହ ନିର୍ମାଣ କଲେ । ସେଠାରେ ଅବସ୍ଥାନ କରୁଥିବା, ମଝେ ମଝେ ଆସୁଥିବା ଲୋକଙ୍କ ଏବଂ ସଭା ସମ୍ମିଳନୀ ବେଳେ ଏକତ୍ର ହେଉଥିବା ଶହ ଶହ ଲୋକଙ୍କୁ ନିଜ ଖର୍ଚ୍ଚରେ ଖାଦ୍ୟ, ପେୟ ଯୋଗାଉଥିଲେ । ବର୍ତ୍ତମାନ ବଉଭରଣି ଗ୍ରାମରେ ଆବାସିକ ଉଚ୍ଚ ବିଦ୍ୟାଳୟ ସ୍ଥାନରେ ତତ୍କାଳୀନ ଆଶ୍ରମ ନିର୍ମାଣ କରାଯାଇଥିଲା ଏବଂ ଶେଷ ସଂଗ୍ରାମ ଯାଏ ରହିଥିଲା ।

ଏହି ଆଶ୍ରମ ଦ୍ୱାରା ପରିଚାଳିତ ହେଉଥିଲା ଗାନ୍ଧିଜୀଙ୍କ ଏକାଦଶ ବ୍ରତ ପାଳନ । ୨ ଜଣ ମୁଖ୍ୟ କର୍ମୀଙ୍କ ନେତୃତ୍ୱରେ ବହୁକର୍ମୀ ଗ୍ରାମ ଗ୍ରାମକୁ ଯାଇଥିଲେ ଲୋକଙ୍କୁ ଶିକ୍ଷାଦାନ କରୁଥିଲେ—ସେପ୍ଟିକ ପାଇଖାନା ନିର୍ମାଣ, ପାଇଖାନା ସଫେଇ ବୃକ୍ଷରୋପଣ, ସୂତାକଟା, ବୟନଶିଳ୍ପ, ହସ୍ତଶିଳ୍ପ, ରୋଗନିରୋଧ, ଗ୍ରାମ ସଫେଇ ଇତ୍ୟାଦି ଇତ୍ୟାଦି । ତା' ସହିତ ଗାନ୍ଧିନୀତି ପାଳନ ଓ ସ୍ୱରାଜ ସ୍ୱାଭିମାନ ଶିକ୍ଷା ।

ଏ ଅଞ୍ଚଳର ଆନ୍ଦୋଳନକେନ୍ଦ୍ର ଥିଲା ୰ ବଗା ପୂର୍ଣ୍ଣାଶ୍ରଙ୍କ ଆଶ୍ରମ । ସେଠୁ କର୍ମୀମାନେ ପଦଯାତ୍ରାରେ ବାହାରି ଗାଁ ଗାଁ ଖେଦ ଯାଉଥିଲେ । ୰ ଶ୍ରୀଧର ରେଡ୍ଡିଙ୍କ ଥିଲା କୋକିଳକଣ୍ଠ, ସୁନ୍ଦର ସ୍ୱରରେ ଦେଶାତ୍ମବୋଧକ ଗୀତମାନ ଗାଇ ଗାଁରେ, ହାଟରେ ବାଟରେ ବେଦରଣ ସମ୍ମାନ କରୁଥିଲେ । ୰ ଲକ୍ଷ୍ମଣ ଦାସଙ୍କ ଓଜସ୍ୱିନୀ ଭାଷଣ ଶୁଣି ଆଦିବାସୀ ଜନତା ତାତି ଉଠୁଥିଲେ, ଶ୍ରୀ ରବି ସିଂ ମାଝୀଙ୍କ କଥା ଶୁଣି ଲୋକେ ସଂଗ୍ରାମ କାମରେ ମାତିଉଠୁଥିଲେ । ହେଲେ ସଭାକୁଗଲେ ପୋଲିସର ଲାଠି ପ୍ରହାର, ଘରେ ଥିଲେ ଇଜାରଦାରଙ୍କ ବେଠି ଝଟା, ଗାଁଆରେ ଏକାଠି ଗୋଷ୍ଠୀରେ ଥିଲେ ସରକାରଙ୍କ ଚଣ୍ଡୁଲିକ ପ୍ରଜା ଅତିଷ୍ଠ ହୋଇ ଉଠୁଥିଲେ ।

ଏମିତି ଅନେକ ଆଦିବାସୀ ଓ ସହରବାସୀ ସେନାବାହିନୀରେ ପଡ଼ିଲେ । ତଥାପି ଆନ୍ଦୋଳନ ଥମେଇଲା ନାହିଁ, ବରଂ ତେଜ ଉଠିଲା । କଂଗ୍ରେସ ବିରୋଧୀ ଅଣ-ସଂଗ୍ରାମୀ ମଧ୍ୟ କର୍ତ୍ତୃପକ୍ଷ ନିର୍ଯାତନା ଦେଖିଲେ, ସେମାନେ ଆନ୍ଦୋଳନରେ ଯୋଗଦେଲେ । ଏ ମଧ୍ୟରେ ଯେତେ ଟଙ୍କା, ଘିଅ ଘଡ଼ିଆ, ଚେଜପାଣି ସମସ୍ତ ଯୋଗାଉଥିଲେ ବଗା ପୂଜାରୀ ।

୧୯୪୨ରେ ସେ ଗିରଫ ହୋଇ ନବରଙ୍ଗପୁର ଜେଲ୍‌ରେ ବିଚାରାଧୀନ ବନ୍ଦୀ ଭାବରେ ତିନିମାସ ବନ୍ଦୀ ଜୀବନଯାପନ କଲେ । ୧୯୪୦ରେ କନମାର୍ଡ଼ା ହରିଜନ ବସ୍ତିଭରଣ୍ଡିରେ ସତ୍ୟାଗ୍ରହ କରିଥିଲେ କିଛି ଦିନ ଧରି, ଶହ ଶହ ସମର୍ଥକ କର୍ମୀଙ୍କୁ ସେ ଖାଇବାକୁ ଦେଉଥିଲେ । ଏହି ସ୍ୱତନ୍ତ୍ରତା ପୋଷକ ଅପରାଧରେ ୬ ମାସ ଜେଲ୍ ହୋଇଥିଲା । ପରନ୍ତୁ ୪୩ ମସିହାରେ ଜେଲ୍‌ଗଲେ, ଆଉ ସ୍ୱଗୃହ ପ୍ରତ୍ୟାବର୍ତ୍ତନ କରିନାହାନ୍ତି । ସେଠି ସହିଦ ହେଲେ, ନିତାନ୍ତ ବୃଦ୍ଧବୟସରେ ମଧ୍ୟ ନିଦାରୁଣ ବନ୍ଦୀର ଯାତନାଭୋଗୀ ଦେଶମାତୃକାର ସେବା କରିଥିଲେ, ତେଣୁ ହେଲେ ଅମର ପୁରୁଷ ।

ତାଙ୍କ ସଂଗ୍ରାମ ସମୟର ହଜାର ହଜାର ସମର୍ଥକ, ଶହ ଶହ ସହକର୍ମୀଙ୍କ ମଧ୍ୟରୁ ସେତେବେଳର ଯୁବକର୍ମୀ ଶ୍ରୀ ଜଗନ୍ନାଥ ତ୍ରିପାଠୀ ସହବନ୍ଦୀ ଜନନେତା, ମହମ୍ମଦ ବାଜି, ଏକାଦିନରେ ବନ୍ଧନ ହୋଇ ଗିରଫ ହୋଇଥିବା ସହଯାତ୍ରୀ ସଙ୍ଗୀ ଶ୍ରୀ ସୀମାଞ୍ଚଳ ବେହେରା ଏବଂ କନକଟାଞ୍ଚଳର ଜନନେତା ଶ୍ରୀ ରବିସିଂ ମାଝୀ ଏବେ ମଧ୍ୟ ଜୀବିତ ଅଛନ୍ତି ମାତ୍ର ପ୍ରାୟ ୯ ଜଣ ସ୍ୱାଧୀନତା ସଂଗ୍ରାମୀ । ସେଇମାନେ କହନ୍ତି କନକଟଅଞ୍ଚଳର କଥା । ସେଇ କାହାଣୀ ମଧ୍ୟରେ ଶହୀଦ ବଗା ପୂଜାରୀଙ୍କ ଅତୁଳନୀୟ ତ୍ୟାଗ, ବଳିଦାନର ମହିମାମଣ୍ଡିତ କାହାଣୀ, ତାଙ୍କ ମେରୁଦଣ୍ଡ ଅଟଳ ବ୍ୟକ୍ତିତ୍ୱ, ଦୃଢ଼ ପ୍ରତିଜ୍ଞା ଗାନ୍ଧିଭକ୍ତି ଓ ନିଷ୍ଠା ଏ ସବୁ ଶୁଣିଲେ ମନପ୍ରାଣ ଶ୍ରଦ୍ଧାରେ ଉଚ୍ଛୁଳି ଉଠେ, ହୃଦୟ ଭକ୍ତିରେ ଭରିଯାଏ । ସୁଖର କଥା ତାଙ୍କ ଜନ୍ମମାଟି ବସ୍ତି ଭରଣ୍ଡିରେ ଗଢ଼ି ଉଠିଛି ବଗା ପୂଜାରୀ ସେବାସଦନ" ନାମକ ଏକ ଅନୁଷ୍ଠାନ । ତଦ୍ୱାରା ଏ ଅଞ୍ଚଳର ସ୍ୱାଧୀନତାର ଇତିହାସ ଉଦ୍ଧାର ପାଇଁ ଆଶା କରାଯାଏ ।

( ସୌଜନ୍ୟ – ସା: ସମାଜ )





ଲେଖକ ଭଗୀରଥି ପାଢୀଙ୍କ ସହ

ଉଦୀୟମାନ କବି ଗୋପାଳକୃଷ୍ଣ ପାଣିଗ୍ରାହୀଙ୍କ ସାକ୍ଷାତ୍କାର ।